ଅନ୍ନପୂର୍ଣ୍ଣା "ବି" ଗ୍ରୁପ୍‌ଦ୍ୱାରା

ଅଭିନୀତ

# ଜହର

ନାଟ୍ୟକାର :—

ଶ୍ରୀ ଭଞ୍ଜକଶୋର ପଟ୍ଟନାୟକ

ପ୍ରକାଶକ
ରାଧାମୋହନ ପୁସ୍ତକାଳୟ
ବଡ଼ଫଂରଲେ,
ଜି : କଟକ



---

ପ୍ରଥମ ପ୍ରକାଶ — ୧୯୪୮, ୧୦୦୦

ଦୁଇ ଟଙ୍କା

ମୁଦ୍ରାକର
ମହମ୍ମଦ ଅବ୍ଦୁଲ ହାଦି
ଲକ୍ଷ୍ମୀନାରାୟଣ ପ୍ରେସ
କଟକ

# ଜହର

ପରିଚାଳନା— ସାମୁଏଲ ସାହୁ (ବାବା)

ସହକାରୀ ପରିଚାଳନା— ଶ୍ରୀ ପ୍ରିୟନାଥ ମିଶ୍ର (ପିର)

ସଙ୍ଗୀତ ଓ ସୁର— କିଶୋରକବି ଶ୍ରୀ ଶ୍ୟାମସୁନ୍ଦର ଦାସ

ସଙ୍ଗୀତ ପରିଚାଳନା—ଶ୍ରୀ ହରିହର ରାଉତ, ଶ୍ରୀ ମଧୁସୂଦନ ପଲବ

ଆବହ ପରିଚାଳନା—ଶ୍ରୀ ମଧୁସୂଦନ ଦତ୍ତ, ଶ୍ରୀ ବୈଦ୍ୟନାଥ ପ୍ରହରାଜ

ରୂପସଜ୍ଜା— ଶ୍ରୀ ବଙ୍କିମ ସରକାର ଆଣ୍ଡ୍ ବ୍ରଦର୍ସ

ମଞ୍ଚ ଶିଳ୍ପୀ— ଶ୍ରୀ ବଟକୃଷ୍ଣ ସେଣ

ସ୍ମାରକ—ଶ୍ରୀ କେଶବଚନ୍ଦ୍ର ଶତପଥୀ, ଶ୍ରୀ ବାଲକିଶୋର ରଥ

## ଭୂମିକାରେ—

ଜହର—ବାବା, ଦୁର୍ଲଭ
ଅମଳ ଚୌଧୁରୀ—ଉମା
ସୁଧାଂଶୁ—ପିର
ଘନଶ୍ୟାମ—ବିପିନ, ଆଣ୍ଡେ
ଦେବକୁମାର—[illegible], ପଙ୍କଜ
ପ୍ରାଣନାଥ—ହର
ସନେଇ—ପୂର୍ଣ୍ଣ
ବାବୁଆ—ମାୟାଧର
କ୍ୟାଭଣ—କେଶବ
ହେମନ୍ତ—ମାଧବ
ଡ୍ରାଇଭର୍—ବାଲ୍କି
ମାଡାଇ—ଯଦୁନାଥ

ଛାୟା—ଲକ୍ଷ୍ମୀପ୍ରିୟା
ପ୍ରୀତି—କୁମୁଦ
ରାଧା—ମଣିମାଳା
ପିଅରମଣି—ମେନକା
ଲଦ, ବୈଷ୍ଣବୀ } ଟୁକି
ଗ୍ରାମ୍ୟ ବଅବା, ଦୁଇଜଣ } ମାଳତୀ, ମଞ୍ଜୁଷା
ବୈଦ୍ୟନାଥ, ରଥନାଥ, ବନ୍ଧୁ, ପଞ୍ଚୁ, ଶୈଳ, ବିପିନ, ବସ୍ତୁ, ବହୁ ପ୍ରଭୃତି ।

ଅନ୍ନପୂର୍ଣ୍ଣା ଥିଏଟର୍ସର ସତ୍ତ୍ୱାଧିକାରୀ—ଶ୍ରୀ ସୋମନାଥ ଦାଶ
କ୍ଷମତାପ୍ରାପ୍ତ ମ୍ୟାନେଜର—ଶ୍ରୀ ଲିଙ୍ଗରାଜ ନନ୍ଦ
ସହକାରୀ ମ୍ୟାନେଜର—ଶ୍ରୀ ରାଜକିଶୋର ମହାନ୍ତି

# ଉତ୍ସର୍ଗ

'ବିଦେଶୀ, ଅତ୍ୟାଚାରୀ ଶାସକଗୋଷ୍ଠୀ ହାତରୁ ଜନ୍ମମାଟିକୁ ମୁକ୍ତ କରିବାଲାଗି ଯେଉଁ ବୀର ସହୀଦ୍‌ମାନେ ପ୍ରାଣବଳି ଦେଇଛନ୍ତି—ସେହିମାନଙ୍କର ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ'—

# ପଟବ ଅଟଧ—

୧୯୪୨ ଅଗଷ୍ଟ । ଭାରତ ଇତିହାସରେ ଅତି ବିଶିଷ୍ଟ ସମୟ । ବିଦେଶୀ, ଶାସକଗୋଷ୍ଠୀର ଅବିଚାର, ଅତ୍ୟାଚାର ସୀମା ଲଙ୍ଘନ କରିଛି । ଦେଶରେ ବିପ୍ଳବ, ଅତ୍ୟାଚାରର ଧ୍ୱଂସଶିଖା ଜନ, ମନ, ଧନ, ମାନ ସବୁ ବିପନ୍ନ କରିଛି । ଗୁଳି ଆଉ ଫାଶୀନ୍‌ର ମୁନରେ ଅଗଣିତ ନିରୀହ ଭାଇ ଭଉଣୀ ସେଇ ଅତ୍ୟାଚାରର ଶିକାର ହୋଇଛନ୍ତି । ଦଳ ଦଳ କରି ଦେଶର ପୂଜ୍ୟ ନେତାମାନଙ୍କୁ ଟାଣି ନିଆଯାଉଛି କାରାଗାରର ଅନ୍ଧାରି ଗୁହା ଭିତରକୁ । ଗରୀବ ଚାଷୀ, ମୂଲିଆ ଉପରେ ଚାଲିଛି ପୁଞ୍ଜିପତିର ଜୁଲୁମ···ସରଳ ପ୍ରଜାମାନଙ୍କ ଉପରେ ଉଠିଛି ସ୍ୱେଚ୍ଛାଚାରୀ ରାଜାର ଦଂଷ୍ଟ୍ରା, ରକ୍ତପିପାସୁ ତରବାରୀ ! ଦିଲ୍ଲୀର ଲାଲ୍‌କିଲ୍ଲା ଉପରେ ଜାତୀୟ ପତାକା ଉଡ଼ାଇବାକୁ ଯାଇ ଏଇ ଦେଶର ପୁଅ ଝିଅମାନଙ୍କର ରକ୍ତରେ ଦିଲ୍ଲୀର ମାଟି ଲାଲ ହୋଇଉଠିଛି— ! ଚାରିଆଡ଼େ ଧ୍ୱଂସର ତାଣ୍ଡବଲୀଳା—ବିଭତ୍ସ ପାଶବିକତା ! ···

ତାପରେ··

ଭାରତର ଭାଗ୍ୟ-ଗଗନରେ ଶତାବ୍ଦୀର ସୁଖସୂର୍ଯ୍ୟ ଉଇଁ ଆସିବାର ସୂଚନା ଦେଖା ଦେଉଛି । ସତ୍ୟସନ୍ଧ, ଦେଶପ୍ରାଣ ବାପୁଙ୍କ ଅହିଂସାର ପ୍ରେମମନ୍ତ୍ର ନେଇ ମଣିଷ ଭିତରର ଶୟତାନ୍‌କୁ ଜୟ କରିବାକୁ ଯାଉଛନ୍ତି । ନିର୍ଭୀକ ଜହରଲାଲ୍‌ଙ୍କର ବାଣୀ ଦେଶ ପ୍ରାଣରେ ଆଣିଛି ଚେତନା । ଗୋଟାଏ ପତାକା ତଳେ ଏକତ୍ରିତ ଜନତାର ସମବେତ 'ଭାରତ ଛାଡ଼' ଚିତ୍କାରରେ ବ୍ରିଟିଶ୍ ମସନଦ୍ ଥରି ଉଠିଛି !

ତାପରୁ··············

ବାଣିଜ୍ୟିକ ସଙ୍ଘ ଗଠିତ ହୋଇ ଇଂରେଜମାନେ ଏ ଦେଶ ଭୂଇଁ ଛାଡ଼ିବାର ମସୁଧା ହେଲାବେଳେ ହଠାତ୍ ଅଘଟନ ଝଂଝର ସୂଚନା ଦେଖାଗଲା । ପ୍ରଳୟର ବାତ୍ୟା ନେଇ ଧର୍ମଦ୍ୱେଷର ବନ୍ୟା ଦେଶକୁ ଗ୍ରାସ କରିବାକୁ ବସିଲା । ଭାଇ ଭାଇ ଭିତରେ ସାମ୍ପ୍ରଦାୟିକ ଭେଦର ଭ୍ରମ ଧାରଣା ନେଇ ବହିଗଲା ରକ୍ତନଦୀ ! ନୂଆଖାଲି, ବିପୁରାରେ ଜଳିଉଠିଲା ହିନ୍ଦୁ ମୁସଲମାନର ଧ୍ୱଂସଲୀଳା ! କପଟୀ ସରକାର ବସି ବସି ମଜା ଦେଖିଲେ । ହାଡ଼ କଙ୍କାଳ ଦି'ଖଣ୍ଡ ନେଇ ବୁଢ଼ା ବୟସର ଗାନ୍ଧୀ ଗଲେ ପାଦଚର ହୋଇ ଆଗରେ ଛାତି ପତେଇବାକୁ ।

ସେଇ···

୧୯୪୭ର ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତି ଭିତରେ 'ଜହର'ର ଜନ୍ମ । ପ୍ରେମିକ-ପ୍ରେମିକାର ବ୍ୟର୍ଥପ୍ରଣୟ କାହାଣୀ ନେଇ ନୁହେଁ—ମୁଗ୍ଧ ଗାୟକର ସଙ୍ଗୀତ ଝଂକାର ବା ସ୍ୱପ୍ନଜୀବୀ ଭାବୁକର ସ୍ୱପ୍ନିଳ କଥାବସ୍ତୁ ନେଇ ନୁହେଁ—ଶତ ସହସ୍ର ନିନ୍ଦା, ଗ୍ଲାନି, କୁତ୍ସା, ଅପମାନ ଓ ଅଭିଶାପ ଭିତରେ ସତ୍ୟର ଆଦର୍ଶ ଧରି ସାମାଜିକ ଜୀବନରେ ଉଇଁଉଠିଲା 'ଜହର', ଅତ୍ୟାଚାରୀ ପୁଞ୍ଜିପତିର ବିରୋଧତା କରି ସାମ୍ୟ, ଶାନ୍ତି ଓ ଐକ୍ୟ ନେଇ ଭାଇ ଭାଇ ଭିତରେ ଏକତା ଫେରାଇ ଆଣିବାକୁ—ଯାହାର ଅଭାବ ଶରଧନ ଜନ୍ମମାଟିକୁ କରିଛି ଦୁର୍ବଳ, ପରପଦାନତ ! ଦେଶଭକ୍ତ, ଉଦାରଚେତା, ନିର୍ଭୀକ, ଦରିଦ୍ରର ବନ୍ଧୁ 'ଜହର' ଦେଶର ଭାଇ ଭଉଣୀମାନଙ୍କୁ ଉଦ୍‌ବୋଧନ ଦେଉଛି ବାପୁଜୀଙ୍କ ଅହିଂସା ପଥରେ ଆସି ଗୋଟାଏ ପତାକାତଳେ ଠୁଳ ହବାକୁ—ବିପ୍ଳବର ଶିଖା ଲିଭାଇ ପ୍ରୀତି ଓ ମୈତ୍ରୀର ବୈଜୟନ୍ତୀ ଉଡ଼ାଇବାକୁ—ଶାନ୍ତିପୂର୍ଣ୍ଣଭାବରେ ଦେଶର ବିଭିନ୍ନ ସମସ୍ୟାର

ସମାଧାନ କରିବାକୁ । କୌଣସି ରାଜନୈତିକ ବିଭ୍ରାଟ୍ ସୃଷ୍ଟି କରିବା ତାର ଲକ୍ଷ୍ୟ ନୁହେଁ,—ବ୍ୟକ୍ତିଗତ ବା ଗୋଷ୍ଠିଗତ କାହାର ବିରୁଦ୍ଧରେ ତାର ପ୍ରବୃତ୍ତି ନୁହେଁ—; ନିଃସ୍ୱାର୍ଥପର ଦେଶପ୍ରୀତି ନେଇ ସେ କ୍ଷତବିକ୍ଷତ ହୋଇ ମଧ୍ୟ ନିର୍ଭୀକଭାବରେ ଦୁନିଅର ସଳଖ ବାଟରେ ଚାଲି ଶିଖିଛି ଓ ଶିଖାଇଛି,—ସେଇଠି ତାର ଚରିତ୍ରର ମହତ୍ତ୍ୱ, ବିଶେଷତ୍ୱ ।

ମୋର 'ଦେବୀ' ଓ 'ବେନାମୀ' ନାଟକ ଅଭିନୀତ ହେଲା ପରେ ପରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଏହି 'କହର' ନାଟକର ରୂପ ଅତି ନିଖୁଣଭାବରେ ଦେଇଛନ୍ତି ତାଙ୍କର ରଙ୍ଗମଞ୍ଚରେ । ନାଟକକୁ ସାଫଲ୍ୟମଣ୍ଡିତ କରିବାପାଇଁ ପରିଚାଳନା ବିଶେଷ ଯତ୍ନ କରିଥିବାରୁ ନାଟକଟି ସର୍ବାଙ୍ଗସୁନ୍ଦର ହୋଇ ମାସ ମାସ ଧରି ଦର୍ଶକମାନଙ୍କୁ ମୁଗ୍ଧ କରିପାରିଛି । ଶ୍ରଦ୍ଧେୟ ବନ୍ଧୁ ପରିଚାଳକ ସାମୁଏଲ୍ ସାହୁ (ବାବି) ନିଜର ସାଧ, ସାଧନା ଦେଇ ନାଟକଟିକୁ ମଞ୍ଚଉପଯୋଗୀ କରିଛନ୍ତି । ମାମୁଲି ଧନ୍ୟବାଦଟିଏ ଦେଇ ତାଙ୍କର ଋଣ ସୁଝିବାର ବ୍ୟର୍ଥ ପ୍ରୟାସ କରିବା ନିତାନ୍ତ ଅସଙ୍ଗତ । ପରିଚାଳକ ସେ, 'କହର' ଭୂମିକାରେ ନିପୁଣ ଶିଳ୍ପୀ ସେ ; ତେଣୁ ଗୌରବ ମୋର ନୁହେଁ, ତାଙ୍କର, କାରଣ ବହିଖଣ୍ଡିକ ଲେଖିଦେଇ ମୁଁ ନିଶ୍ଚିନ୍ତ, ଜୀବନ ଦେଇଛନ୍ତି ସେ । ତାଙ୍କ ପାଖରେ ମୁଁ ସାରା ଜୀବନ ଋଣୀ ରହିଥିବି । ସହକାରୀ ପରିଚାଳକ ପିଲବାରୁ ନାଟକର ଅନ୍ୟତମ ବିଶିଷ୍ଟ ଚରିତ୍ର 'ସୁଧାଂଶୁ'ର ଅଭିନୟ ଅତି ଜୀବନ୍ତ କରିଛନ୍ତି । ତା'ଛଡ଼ା ନାଟକକୁ ରୂପାୟିତ କରିବା ଦିଗରେ ତାଙ୍କର ଉଦ୍ୟମ ମଧ୍ୟ ଅଳ୍ପ ନୁହେ । ସେଥିପାଇଁ ସେ ମୋର ଧନ୍ୟବାଦାର୍ହ । କଣ୍ଠୋରବାର ଶ୍ରୀ ଶ୍ୟାମସୁନ୍ଦର ଦାସ ନାଟ୍ୟଜଗତରେ ନୂଆ ନୁହନ୍ତି । ତାଙ୍କର

ସଙ୍ଗୀତ ଓ ସ୍ୱର ଯୋଜନା 'ଜହର' ନାଟକର ଅନ୍ୟତମ ଆକର୍ଷଣ । କେବଳ କବି ବା ଗାୟକ ନୁହନ୍ତି, ପ୍ରଚ୍ଛଦପଟର ଚିତ୍ର ତାଙ୍କର ଚିତ୍ରଶିଳ୍ପ ନୈପୁଣ୍ୟର ମଧ୍ୟ ପରିଚୟ ଦିଏ । ତାଙ୍କ ପ୍ରତି ମୋର ଗଭୀର କୃତଜ୍ଞତା ପ୍ରକାଶ କରୁଛି । ଶ୍ରୀଯୁକ୍ତ ବଙ୍କିମ ସରକାର ଆଣ୍ଡ୍ ବ୍ରଦର୍ସ୍ କରିଛନ୍ତି ରଙ୍ଗମଞ୍ଚର ଦୃଶ୍ୟସଜ୍ଜା । ଅନ୍ୟ ଯେଉଁମାନେ ନାଟକ ଅଭିନୟକୁ ଜୀବନ୍ତ କରିବାରେ ଆମ୍ଭମାନଙ୍କୁ ସାହାଯ୍ୟ କରିଛନ୍ତି ସେମାନଙ୍କୁ ବିଶେଷ ଧନ୍ୟବାଦ । 'ବି' ଗ୍ରୁପ୍‌ର ମ୍ୟାନେଜର ଲିଙ୍ଗରାଜ ବାବୁଙ୍କର ସଦିଚ୍ଛା ସେହି ନାଟକର ଅଭିନୟ, ତେଣୁ ତାଙ୍କୁ ନାଟ୍ୟକାର ତାର ଅନ୍ତରର ଗଭୀର ଶ୍ରଦ୍ଧା ଅର୍ପଣ କରୁଅଛି । [illegible], ଭାଗୀରଥୀ, ନିଶାମଣି ଓ ନେହାନନ୍ଦ ପ୍ରଭୃତି ବନ୍ଧୁମାନେ ମୋତେ ବିଶେଷ ଉତ୍ସାହିତ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ । ପରିଶେଷରେ ମାନ୍ୟବର ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ମହୋଦୟ ଏହି ନାଟକର ମୁଦ୍ରଣ ନିମିତ୍ତ ଟ୧୦୦୯ଙ୍କା ଦାନ କରିଥିବାରୁ ତାଙ୍କର ଉଦାରତା ପାଇଁ ମୁଁ ତାଙ୍କୁ ମୋର ହୃଦୟର ଭକ୍ତି ଅର୍ପଣ କରୁଅଛି ।

—ଜୟହିନ୍ଦ୍—

'ମଳୟ-ନିଳୟ'
ସୁତାହାଟ,କଟକ
ତା ୧୨।୭।୧୯୪୭

ବିନୟାବନତ
**ଭଞ୍ଜକିଶୋର**



୧

## —ପ୍ରଥମ ଦୃଶ୍ୟ—

[ ଜହରର ପ୍ରେସ ସଲଗ୍ନ ଅଫିସ । ଦୋ ତାଲକୁ ଯାଇଛ ସିଡ଼ି । ତଳ ମାହାଲର Office room ପର୍ଦାଟି ଅଧା ମେଲା, ଦରଜା ଉପରେ No admission ପଟା ଝୁଲୁଛ । ଭିତ ଭିତରେ ଟେବୁଲ, ଚେୟାର, ବେଞ୍ଚ ପ୍ରଭୃତି । ସିନ୍ ଉଠିଲା ପରେ ପ୍ରବେଶ କଲା ଛାୟା । ହାତରେ ଖାତା ଓ ବହି । ଟିକିଏ ପଦଗୃରଣ କର ସେ କାହାର ଉଦ୍ଦେଶ୍ୟରେ ଅପେକ୍ଷା କରିବାକୁ ଲଗିଲା । କିଛିକ୍ଷଣ ପରେ ଦେବକୁମାର ପ୍ରବେଶ କଲେ । ହାତରେ stick. ସେ ଛାୟାକୁ ଲକ୍ଷ୍ୟ ନ କର ପାଠିରେ ଗୁଣୁଗୁଣୁ ହୁଇସିଲ୍ ଦେଇ ଦେଇ ସିଡ଼ି ଉପରକୁ ଉଠି ଯାଉଥିଲେ ]

ଛାୟା—( ଦେବକୁମାରକୁ ଦେଖି ) ଜହର ଅଛ ?

ଦେବ—( ଫେରିପଡ଼ି ) Oh. Good evening Miss ! ଆଜ୍ଞେ—

ଛାୟା – ଜହର ଅଛି ?

ଦେବ—କାହାକୁ ଖୋଜୁଚନ୍ତି ? କଅଣ ଦରକାର ? କହନ୍ତୁ ମୁଁ ଅପଣଙ୍କର କୌଣସି ଦରକାରରେ ଅସି ପାରିବ ?

ଛାୟା—ଆପଣେ ଜହରର ଖଣ୍ଡିଏ କପି ଦେଇ ପାରିବେ ?

ଦେବ—ନିଶ୍ଚୟ ଦେଇ ପାରିବି—ନିଶ୍ଚୟ ଦେଇ ପାରିବି (ବସିପଡ଼ି) କିନ୍ତୁ କାହାର କପି କହିଲେ ?

ଛାୟା—ଜହରର୍......

ଦେବ—ଜହରର ? Oh I see ! ମାନେ ଜହରର କପି ଚାହାନ୍ତି ?

ଛାୟା—( ଭୀଷଣ ବିରକ୍ତ ହୋଇ ) କହିଲି ତ !

ଦେବ—ଦେଖନ୍ତୁ, ଆପଣ ବଡ଼ ସାଂଘାତିକ ଜିନିଷର କପି ମାଗି ବସିଲେ ।

ଛାୟା—ଜିନିଷର ନୁହେଁ । ଜହର ବହିର copy ମୋର ଦରକାର ।

ଦେବ—ବଡ଼ ଭୁଲ କରୁଛନ୍ତି ମିସ୍ । ମାନେ ଆପଣ କଣ ମାଗୁଛନ୍ତି ମୁଁ କିଛି ବୁଝି ପାରୁନାହିଁ । ଜହର......ଜହର ବାବୁଙ୍କୁ ଡାକିଦେବି ?

ଛାୟା—ବୁଝିଲି । ଆପଣ କିଛି ଦେଇ ପାରିବେ ନାହିଁ, କେବଳ କହି ପାରୁଛନ୍ତି ।

ଦେବ—Exactly. ମାନେ ମୋଟ ଉପରେ ମୁଁ ଏଠାକାର ଲୋକ ନୁହେଁ । ଜଣେ ସାଧାରଣ ଅତିଥି ହିସାବରେ ମୋର ଏଠାକୁ ଆସିବା । ସରୋଜବାବୁ ଅର୍ଥାତ୍—ଶ୍ରୀ ସରୋଜ କୁମାର ଦାସ B. A., B. L. ମାନେ ମୋର brother-in-law ଜହରବାବୁଙ୍କର ଅତି ଅପରିଚିତ ବନ୍ଧୁ । ଆଜି ମୁଁ ଦେବକୁମାର ଅନେକ ଦିନ ଥିଲି କଲିକତାରେ Film studioରେ । ଆଜି ସେଇଠୁ ତିନି ତିନି ବର୍ଷର ଅଭିଜ୍ଞତା ନେଇ ଫେରିଛି ମୋର ଜନ୍ମଭୂମିକୁ ।

ଛାୟା—ଠିକ୍ କହୁଛନ୍ତି, କିନ୍ତୁ ଆପଣଙ୍କର Private history ଶୁଣିବାକୁ ମୁଁ ଆସିନି । ଆପଣ ଦୟାକରି ଏଠୁ ଉଠିଯାନ୍ତୁ ।

ଜହରର ଖଣ୍ଡିଏ କପି ମୋପାଇଁ ମଗେଇ ଦେଲେ
ଯଥେଷ୍ଟ ହବ ।

ଦେବ—ନମସ୍ତେ ! ନମସ୍ତେ ! ଦେଲେ ମିସ୍—ମାନେ ମିସେସ୍—ଆପଣଙ୍କ
ନାଁଟା ନଜାଣି ମୁଁ ବଡ଼ ଗୋଳମାଳରେ ପଡ଼ୁଛି ।

ଛାୟା—ମୋ ନାଁ ଜାଣି ଆପଣଙ୍କର କିଛି ଲାଭ ନାହିଁ ( ବିରକ୍ତରେ
ଉଠିଗଲେ )

ଦେବ—ତା......ଲାଭ ନହେଲେ ନାହିଁ—ମୁଁ ଅପଣଙ୍କ ପାଇଁ କିଛି ନା
କିଛି କରିବି ।

ଛାୟା—ଅର୍ଥାତ୍ ?

ଦେବ—ଅର୍ଥାତ୍, ଆଜ କିଛୁକ୍ଷଣ ଅପେକ୍ଷା କଲେହିଁ ଆପଣ କପିର
ସନ୍ଧାନ ବୋଧହୁଏ ପାଇପାରିବେ । ଅଚ୍ଛା ଆପଣ
କଲେଜରୁ ଫେରୁଛନ୍ତି । ( ଛାୟାକୁ ନୀରବ ଦେଖି ପାଖକୁ
ଲାଗି ଆସି ) ବେଶ୍ ବେ କଥା ନ କହନ୍ତୁ । ଆପଣଙ୍କ ବସାର
ଠିକଣାଟା ଦେଲେହିଁ ମୋର ଅନେକ ଉପକାର ହବ ।

ଛାୟା—ତା'ର ମାନେ ?

ଦେବ—ଅଗରୁ କହୁଛି । ତିନି ତିନି ବର୍ଷର ଅଭିଜ୍ଞତା ନେଇ
ମୁଁ ଫେରୁଛି କଲିକତା Film studioରୁ । ସେଇ
ସମ୍ପର୍କରେ ଆପଣମାନଙ୍କ ପରି accomplished girls
ମାନଙ୍କ ତରଫରୁ କୌଣସି ସାହାଯ୍ୟ ସହାନୁଭୂତି ......

ଛାୟା—କିନ୍ତୁ .........

ଦେବ—ଏଥିରେ ଆଉ ପ୍ରତିବାଦର କଥା କଣ ରହିଲା ? ମନେ କରନ୍ତୁ
ଆପଣ ଯେମିତି ଚୁପ୍‌ଚାପ୍ ହେଇ ବସିଥିଲେ, ଏ ପର୍ଯ୍ୟନ୍ତ
ସେମିତି ବସିଥାନ୍ତେ । ମୁଁ ଆସି ପହଞ୍ଚିଗଲି, ଆଉ ପହଞ୍ଚିବା
ସାଙ୍ଗେ ସାଙ୍ଗେ ଆପଣଙ୍କ ବିରକ୍ତିକର ନୀରବତା ଭାଙ୍ଗିଯାଇଛି ।

ତା'ଛଡ଼ା କେତେଗୁଡ଼ାଏ ଦରକାରୀ ଖବର ମୁଁ ଅପଣଙ୍କୁ ଦେଇ ପାରନ୍ତି—ଅନ୍ତତଃ ମୋ ନିଜ ବିଷୟରେ ।

ଛାୟା—( ବ୍ୟଙ୍ଗରେ ) ଅପଣଙ୍କର ଅପି ଚିହ୍ନିବା ନିତାନ୍ତ ଭୁଲ । ଅଜ ମତେ ଅଯଥା ବିରକ୍ତ କରିବା ମଧ୍ୟ ନିହାତି ଅନ୍ୟାୟ ।

ଦେବ—ବାଲ୍‌ଜଣି ! କିନ୍ତୁ ମିସ୍, ମୋର ମନେହୁଏ କଲେଜରେ କୌଣସି ଅଲୋଚନା, ସମାଲୋଚନା ବା ବିଷଦ୍ ଅଲୋଚନା ଫଳରେ ଅପଣଙ୍କର ନିଶ୍ଚୟ ମୁଣ୍ଡ ଖରାପ ହୋଇଯାଇଛି ।

ଛାୟା—ମୁଣ୍ଡ ଖରାପ ହୋଇଛି ଅପଣଙ୍କର । ଭଦ୍ରଲୋକର ମୁଖା ପିନ୍ଧି ଅପଣ ମୋ ପ୍ରତି ଯେଉଁ ବ୍ୟବହାର କରୁଛନ୍ତି ତା' କୌଣସି ଜଙ୍ଗଲି ମଧ୍ୟ କରନ୍ତା ନାହିଁ ।

ଦେବ—ହାୟ ! ହାୟ ! ଅପଣ ଏ କଣ କରୁଛନ୍ତି ମିସ୍ । ମୁଁ ଜଣେ.........

ଛାୟା—ଅପଣ ଜଣେ Brute, ଡେଭିଲ୍ ।

ଦେବ—Hopeless ! କଲେଜରେ ପାଠ ପଢ଼ି ମଧ୍ୟ ଷ୍ଟୁଡେଣ୍ଟ ଚେହେରାକୁ ଅପଣଙ୍କୁ ଅଦୌ ମାଲୁମ ନାହିଁ ଦେଖୁଛି । Alright Thank you, verywell as you like (ଧୀରେ ଧୀରେ ସିଢ଼ି ଉପରକୁ ଉଠିଲେ । ଅନ୍ୟ ଦିଗରୁ ହାତରେ ଧୂମକେତୁ ଖଣ୍ଡିଏ ଧରି ଅସୁଥିଲେ ଜହର )

ଦେବ—Hallo Mr. ଅପଣଙ୍କ କପି—ମାନେ ଅପଣଙ୍କୁ ଗୁହାନ୍ତି ଏଇ ମିସ୍ । ହାୟ, ହାୟ, ନିତାନ୍ତ ନାଁଟା କହିଲେ ନାହିଁ ସେ...

ଜହର—(ଓହ୍ଲାଇ ଅସି) ମତେ ଗୁହାନ୍ତି ଅପଣ ?

ଛାୟା—(ବିରକ୍ତିରେ) ନା, ନା, ନା, ମୁଁ ଅପଣଙ୍କୁ ଅଦୌ ଗୁହେଁନା । କହୁର ଖଣ୍ଡିଏ କପି ।

ଜହର—ଓହୋ ! ଆପଣ ଜହର ବହି ଖଣ୍ଡିଏ କିଣିବାକୁ ଚାହାନ୍ତି ?

ଛାୟା—କି ସର୍ବନାଶ ! ଆପଣମାନେ ଏକାଥରକେ କଣ ଅତି ସହଜ କଥାଗୁଡ଼ାକ ବୁଝି ପାରନ୍ତି ନାହିଁ ? ଦେଖୁଛି ଏଠିକାର ସବୁ ଜୀବଗୁଡ଼ିକ ସମାନ ।

ଜହର—(ଛାୟାର ବିରକ୍ତିର କାରଣ ବୁଝି ନପାରି) ଦେଖନ୍ତୁ ବହି ଅଳ୍ପ କେତେଖଣ୍ଡିମାନ ଅଛି ମୋ ପାଖରେ । Next edition ନିକଟରେ publish କରାଯିବ ।

ଛାୟା—ସେଇ କଥାଟି ଆଗରୁ ଜାଣିଥିଲେ ଏତେ ସମୟ ମୋର ଅଯଥା ନଷ୍ଟ ହୋଇ ନ ଥାନ୍ତା । (ଫେରି ଯାଉଥିଲା)

ଜହର—(ପଛରୁ) ତେବେ ଦରକାରଟା ଯେତେବେଳେ ଆପଣଙ୍କର ନିତାନ୍ତ ବେଶୀ ମୁଁ ଆପଣଙ୍କୁ ଖଣ୍ଡିଏ ଦେଇପାରେ । ଟିକିଏ ଅପେକ୍ଷା କରନ୍ତୁ, ବାବୁଆ, ବାବୁଆ—

ବାବୁଆ—ଆଜ୍ଞା !

ଜହର—ହେମନ୍ତକୁ ଡାକ ତ ।

ବାବୁଆ—ମେନେଜର ବାବୁ କୁଆଡ଼େ ଯାଇଛନ୍ତି ବାହାରକୁ । ଅବଶ୍ୟ ଫେରିବେ ବୋଲି କହିଯାଇଛନ୍ତି ।

ଜହର—ଅଚ୍ଛା ! ମୁଁ ଆଣି ଦଉଛି । ତୁ ଯା । (ଚାଲିଗଲେ ଓ ଜହର ବହି ଖଣ୍ଡିଏ ନେଇ ଫେରିଲେ)

ଛାୟା—ଧନ୍ୟବାଦ ! (ଦାମ୍ ଦେଇ) ଦାମ୍‌ଟା ରଖନ୍ତୁ । ନମସ୍କାର । (ତରତରରେ ନିଜର ବହି ଓ ଖାତା ଟେବୁଲ୍ ଉପରେ ଛାଡ଼ିଦେଇ ପ୍ରସ୍ଥାନ)

ଜହର—ବାବୁଆ ! ହେମନ୍ତ ଫେରିଲେ ମତେ ଖବର ଦବୁ । (ଦେବପ୍ରତି) ଦେବକୁମାର ! ତୁମେ ଅପେକ୍ଷା କର । ମ୍ୟାନେଜର ଫେରିଲେ ମୁଁ ତୁମ ହାତରେ ପତ୍ରିକା ପାଖକୁ

ଟଙ୍କା ପଠେଇବ । ତୁମେ ସବେଜର ଗାଁକୁ ଯିବବୋଲି କହୁଥିଲ ନା ?

ଦେବ—ହଁ Sir ଯିବ । କିନ୍ତୁ ଫେରିବା ସାଙ୍ଗେ ସାଙ୍ଗେ ଆପଣ ଯେମିତି ମୋର ବ୍ୟବସ୍ଥା କରନ୍ତୁ ।

ଜହର—ଅଚ୍ଛା, ତୁମେ ଅପେକ୍ଷା କର । (ଗୃହଲୁ ଗଲେ)

ଦେବ—(ଏଣିକି ତେଣିକି ଗୁହିଁ) Gone Miss Darling gone ? (ଚ୍ଛାୟାର ବହିଟାକୁ ପରେ ନଜର ପଡ଼ିବାରୁ ବହିଖଣ୍ଡି ଉଠାଇ) ଓ Sweet one ! ତୁମର କଥାମିଠା କଥାଗୁଡ଼ିକ ଚ୍ଛାତି ଭିତରେ ଶବ୍ଦଧନକୁ ଦାଗ ଟାଣିଦେଇ ଯାଇଛି । (ବହିଟିକୁ ଚୁମ୍ବନ କଲେ ଓ ପରେ କଭର ଖୋଲି ନାଁଟିକୁ ଅବାସ୍ଥାର କଲେ) ଓ, କୁମାରୀ ଚ୍ଛାୟାଦେବୀ—ମାନେ ମିସ୍ ଚ୍ଛାୟା— Oh good, good. How sweet a name !

ହେମନ୍ତ—(ପ୍ରବେଶ କଲେ, ହାତରେ ଚେକ୍ ବହି) କଣ କି ଦେବକୁମାର ବାବୁ ?

ଦେବ—(ମନୋଭାବକୁ ଲୁଚେଇ) ନା ମିଷ୍ଟର, ଚମତ୍କାର । ଏଇ ବହିଖଣ୍ଡି ଭାରି ସୁନ୍ଦର ଲେଖିଛି । ବାସ୍ତବିକ ଟେନିସନ୍‌ର କବିତାକୁ ପ୍ରଶଂସା ନକରି କହି ହୁଏନା । ମାନେ କବିତାର ପ୍ରତ୍ୟେକ ଧାଡ଼ିରେ ଭରି ଦେଇଛି, ସୁନ୍ଦର, କୋମଳ ideas. ମନେହୁଏ ସ୍ୱର୍ଗ ଓହ୍ଲାଇ ଆସିଛି ଧରାତଳକୁ ।

ହେମନ୍ତ—(ବହି ଖଣ୍ଡିକ ନେଇ) ପୃଥିବୀ ଓହ୍ଲେଇ ଯାଉଛି ନର୍କକୁ । ଆପଣ ଯେ କଣ—

ଦେବ—କଣ ମାନେ ? ମତେ ଆପଣ ସନ୍ଦେହ କରୁଚନ୍ତି ନା କଣ ?

ହେମନ୍ତ—କବି ଟେନିସନ୍‌ଙ୍କର ଏତେ କୋମଳ ଭାବ ତୁମେ ଏ କେମିତି ବହିରୁ ପାଇଲ କେଉଁଠୁ ?

ଦେବ—ହଉଛି ନା କଣ ? ଦେଖି ଦେଖି ଓଃ ସାଂଘାତିକ ଭୁଲ୍ ହେଉଛି ତା ହେଲେ । (ଜହର ପ୍ରବେଶ କଲେ, ଦେବକୁମାର ବହିଟିକୁ ଟେବୁଲ୍ ଡ୍ର ଭିତରେ ଲୁଚାଇଦେଲେ ସେମାନଙ୍କର ଅଜ୍ଞାତରେ )

ଜହର—ବାପାଙ୍କଠୁ ଫେରିଲ ନା କଣ ହେମନ୍ତ ? ଟଙ୍କା ଆଣିଛ ତ ?

ହେମନ୍ତ—ଆଣିଛି ଆଜ୍ଞା ।

ଜହର—ବେଶ୍ । ତୁମେ ଦେବକୁମାର ହାତରେ ଦୁଇଶ ଟଙ୍କା ସତ୍ୟେନ ପାଖକୁ ପଠେଇ ଦିଅ । ଗୋଟାଏ ରସିଦ ରଖିବ ।

ହେମନ୍ତ—(ଯାଉଁ ଯାଉଁ ଫେରି) ଆଜ୍ଞା, ହରିପୁରର ମୁସଲମାନ ଯୁବକ ସଙ୍ଘ ଯୋଉ ସାହାଯ୍ୟ ଚାହୁଁଛି —

ଜହର—ହଁ ! ଏଇ ମନିଅର୍ଡ଼ର କରିଦିଅ । ମହମ୍ମଦ ଅଲି ଖାଁକୁ ମୁଁ wire କରି ଦେଇଛି ।

ହେମନ୍ତ—କିନ୍ତୁ ଆଜ୍ଞା, ମୁସଲମାନ ଯୁବକ ସଙ୍ଘ ।

ଜହର—ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ବା ହରିଜନ ଯାହା ହଉ, ସବୁ ଅନୁଷ୍ଠାନରେ ସମସ୍ତଙ୍କୁ ସାହାଯ୍ୟ କରିବା ମୋର ନୀତି । ତୁମେ ଚମକି ପଡ଼ନା ହେମନ୍ତ । ମୁସଲମାନମାନେ ଏଇ ଦେଶ ମାଟିର ସନ୍ତାନ, ସେମାନେ ଆମର ଭାଇ । ତାଙ୍କୁ ବାଦ୍ ଦେଲେ ଆମର ସ୍ୱାଧୀନତା ଆଉଥରେ ବିଦେଶୀ ହାତରେ ରହିଯିବ ।

ହେମନ୍ତ—ମୁଁ ଏଇ ଶହେ ଟଙ୍କା ମନିଅର୍ଡ଼ର କରିଦେବି ।

ଜହର—ଏଇ ନୁହେଁ, ବର୍ତ୍ତମାନ । ସେମାନେ ହୁଏତ ଆମର ଅପେକ୍ଷାରେ ଥିବେ । ହେମନ୍ତ ! ଏ ସବୁ କାମରେ ହେଳା କଲେ ଚଳିବ ନାହିଁ । ତାହାହେଲେ ବିଶ୍ୱାସ ହରେଇବାକୁ ପଡ଼ିବ, ତୁମେ ଯାଅ ।

( ହେମନ୍ତ ଓ ତାହାଙ୍କ ପଛରେ ଦେବକୁମାରର ପ୍ରସ୍ଥାନ )

( ଜହର ଖଣ୍ଡିଏ ଚେୟାରରେ ବସି ଖବର କାଗଜ ପଢ଼ୁଥିଲାବେଳେ ପ୍ରବେଶ କଲେ ରାୟସାହେବ ଅମଳ ଚୌଧୁରୀ—ସହରର ଖ୍ୟାତନାମା ଧନକୁବେର ) ।

ଚୌଧୁରୀ—ଜହରବାବୁ !

ଜହର—କିଏ ? ( ଫେରିଚାହିଁ ) ଓ ! ଆପଣ ! ନମସ୍କାର, ଆସନ୍ତୁ ।

ଚୌଧୁରୀ—(ପ୍ରତିନମସ୍କାର କରି ଆସନ ଗ୍ରହଣ କଲେ ) ବିଶେଷ ଦରକାରରେ ମୁଁ ଆପଣଙ୍କ ପାଖକୁ ଆସିଛି ।

ଜହର—ଦରକାରରେ ହଉ ବା ଅଦରକାରରେ ହଉ, ଆପଣଙ୍କ ପରି ବିଖ୍ୟାତ ବ୍ୟକ୍ତି ଯେ ମୋ ପାଖକୁ ଆସିଚନ୍ତି, ସେଇ ମୋର ପରମ ସୌଭାଗ୍ୟ ।

ଚୌଧୁରୀ—ଆପଣଙ୍କ କାଗଜରେ ମୋର କାର୍ଯ୍ୟକଳାପ ସମ୍ବନ୍ଧରେ ଯୋଉ କଦର୍ଯ୍ୟ ସମାଲୋଚନା କରାଯାଇଛି, ମୁଁ ତା'ର ପ୍ରତିବାଦ କରିବାକୁ ଆସିଛି ଜହର ବାବୁ । ଆପଣଙ୍କ ଜହର କାଗଜ ଓ ଧୂମକେତୁ ଭଳି ଶକ୍ତିଶାଳୀ କାଗଜ ମୋ ପଛରେ ଲାଗିଛି ଓ କୋଉ ଉଦ୍ଦେଶ୍ୟରେ ଲାଗିଛି ମୁଁ କିଛି ବୁଝି-ପାରୁନାହିଁ ।

ଜହର—ଆପଣଙ୍କ ମିଲ୍‌ର ଶ୍ରମିକମାନଙ୍କର ସୁଖ ଓ ସୁବିଧା ଦିଗରେ ଆପଣଙ୍କୁ ଚେତେଇ ଦେବା ଏ ସମାଲୋଚନାର ଉଦ୍ଦେଶ୍ୟ ।

ଚୌଧୁରୀ—ମୋର ଶ୍ରମିକମାନଙ୍କ ପ୍ରତି ମୁଁ କୌଣସି ଅବିଚାର କରିନାହିଁ । ମୋ ବିପକ୍ଷରେ ଗୋଟାଏ କଦର୍ଯ୍ୟ ମନୋବୃତ୍ତି ସୃଷ୍ଟି କରି Society ରୁ ମୋର ଖ୍ୟାତି ଚିରକାଳ ନଷ୍ଟ କରିବାର ଅର୍ଥ କଣ ?

ଜହର—ଆପଣଙ୍କୁ ବଦନାମ କରିବା କୌଣସି କାଗଜର ଉଦ୍ଦେଶ୍ୟ ନୁହେଁ । ସୋସାଇଟିର ଆଖିରେ କଳା ପରଦା ଟାଣି,

ଦେଶର ବଡ ବଡ଼ ଚେୟାର ଦଖଲ କରି ଅପଣଙ୍କ ପରି କେତେ ଜଣ ଧନୀକ ବ୍ୟବସାୟୀ ଗରିବ ଦୁସ୍ଥ ଲୋକଙ୍କ ଉପରେ କିଭଳି ନିର୍ମମ ଅତ୍ୟାଚାର ଓ ଶୋଷଣ ନୀତି ଚଳେଇ ଅସୁଚନ୍ତି, ଜହର ଓ ଧୂମକେତୁ ଦେଶବାସୀଙ୍କ ଆଗରେ ସେଇତକ ବାଢ଼ିଛି ମାତ୍ର ।

ଚୌଧୁରୀ—ଆପଣ କି ସାଙ୍ଘାତିକ ଅଭିଯୋଗ ଆଣୁଚନ୍ତି । ମୋର କାର୍ଯ୍ୟକଳାପ ବିରୁଦ୍ଧରେ ଆପଣ ଯଥାଯୋଗ୍ୟ ପ୍ରମାଣ ଦେଇ ପାରିବେ ?

ଜହର—ପ୍ରମାଣ ହାତରେ ନ ରଖି କେହି ଆପଣମାନଙ୍କ ପରି ପ୍ରତିପତ୍ତିଶାଳୀ ବ୍ୟକ୍ତିଙ୍କୁ ବିପକ୍ଷ କରିବାର ମୂର୍ଖତା କରନ୍ତି ନାହିଁ । ସରକାରଙ୍କ ଆଖିରେ ଅଞ୍ଜନ ବୋଳି, ଦେଶର ନେତାମାନଙ୍କୁ କୁହୁକ ଦେଖେଇ ବ୍ୟବସାୟ ଛଳନାରେ ଆପଣମାନେ ଯୋଉ ଉପାର୍ଜନର ପନ୍ଥା ଧରିଚନ୍ତି ସେଇତକ ପଦାରେ ପକେଇବା କାଗଜର ଉଦ୍ଦେଶ୍ୟ । ବଡ଼ ବଡ଼ କଥା ଶୁଣେଇବା ଆପଣଙ୍କର ଗୋଟାଏ ସୌଖିନ୍ ବିଳାସ । ରାଜନୀତି ଆପଣମାନଙ୍କର ଗୋଟାଏ ଖେଳ ।

ଚୌଧୁରୀ—କି ସାଙ୍ଘାତିକ ଲୋକ ଆପଣ ଜହର ବାବୁ ?

ଜହର—ସାଙ୍ଘାତିକ ଆପଣମାନେ । ଆଜ୍ଞା କହନ୍ତୁ ଦେଖି ଶ୍ରୀଯୁକ୍ତ ଚୌଧୁରୀ, ଏଇ ଗରିବ କଙ୍ଗାଳ ଦେଶର ଅଜସ୍ର ଧନ ଲୁଟ୍ କରି ଆପଣମାନେ ଯେ ବ୍ୟାଙ୍କ ଭର୍ତ୍ତି କରିଚନ୍ତି, ଗରିବର ରକ୍ତ ଶୋଷି ଆପଣମାନେ ଯେ ଦେଶରେ ଅଗଣିତ ମିଲ୍ factory କରେଇ ଦେଇଚନ୍ତି, ଏଥିରେ ଦେଶର ସ୍ୱାର୍ଥ କଣ, ଲାଭ କଣ ?

ଚୌଧୁରୀ—ଲାଭ କ୍ଷତିର ହିସାବ ମାଗିବାକୁ ଆପଣ କିଏ ?

ଜହର—ଶ୍ରୀଯୁକ୍ତ ଚୌଧୁରୀ, ବ୍ୟାଙ୍କରେ ଅଛି ଆପଣଙ୍କର ଅଜସ୍ର ଟଙ୍କ ଛୋଟା ବାଡ଼ ଗାଡ଼ ଘୋଡ଼ା ମଟରକାର ପ୍ରଭୃତି ବିଳାସରେ ଆପଣମାନେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରନ୍ତି । ବର୍ତ୍ତମାନ ସମୟ ଆସିଛି । ସେ ଖର୍ଚ୍ଚର ହିସାବ, ସେ ଅଯଥା ବିଳାସର କୈଫିୟତ ଦେଶବାସୀଙ୍କୁ ଦବାକୁ ହେବ । ଯୋଉମାନଙ୍କ ଝାଳବୁହା ଧନରେ ଅପଣ କୁବେର, ସେଇ ନିଷ୍ପେଷିତ, ନରନାରୀଙ୍କ ପାଇଁ ଅପଣ କରିଚନ୍ତି କଣ ? ଧୂମକେତୁ ଓ ଜହର ଲଗିଛି ସେଇମାନଙ୍କ ପଛରେ, ଯୋଉମାନେ ଟଙ୍କାର ଯନ୍ତ୍ର ହୋଇ, କେବଳ ନିଜର ସ୍ୱାର୍ଥସିଦ୍ଧି ପାଇଁ, ହଜାର ସମିତି ଦ୍ରୁତ ରାଜନୈତିକ ସମ୍ମିଳନୀରେ ଲମ୍ବା ବକ୍ତୃତା କରନ୍ତି, ଆଉ ଅସେମ୍ବ୍ଲି ମେମ୍ବର ହବାକୁ ଭୋଟର ଭିକାରି ହୁଅନ୍ତି ।

ଚୌଧୁରୀ—ଦେଶରେ କେବଳ ମୁଁ ନୁହେଁ, ଅହୁରି ଅନେକ ବଡ଼ଲୋକ ଅଛନ୍ତି, ଯୋଉମାନେ ଦେଶର ସ୍ୱାର୍ଥରେ ଛୋଡ଼ାକୁ ଛୋଡ଼ା ଖର୍ଚ୍ଚ କରି ପାରନ୍ତେ ।

ଜହର—ତା ଠିକ୍ । ଦେଶରେ ବଡ଼ଲୋକଙ୍କର ଅଭାବ ନାହିଁ । ହେଲେ କଥା ଅଛି, ସେସବୁ ବଡ଼ଲୋକଙ୍କ ନାଁ ଧରିଲେ କୁଅଡ଼େ ଖାଇବାକୁ ମିଳେ ନା । ସେସବୁ ବଡ଼ ବଡ଼ ନାଁ ନେଇ ଫାଇଦା ଉଠାନ୍ତି ବଙ୍ଗତ ଗଭର୍ଣ୍ଣର, ପାର୍ଲିଆମେଣ୍ଟର ପ୍ରତିନିଧି, ଅଣ୍ଡରହିଲର ବୋର୍ଡର ଚେୟାରମ୍ୟାନ, ଅଙ୍ଗ କେତେକ ରାଜାଶ୍ରିତ ଦଲାଲ ।

ଚୌଧୁରୀ—ବୁଝିଲି । ଅପଣ ସାମ୍ୟବାଦର କଥା କହୁଚନ୍ତି, ତା ହେଲେ ଅଉ ବକ୍ତୃତା କାହିଁକି ଜହରବାବୁ ? ଗୋଟାଏ ଷ୍ଟାଇକ୍ ତ ଅକ୍ଲେଶରେ କରେଇ ଦେଇ ପାରିବେ ।

ଜହର—ଭୁଲ ବୁଝିଚନ୍ତି ଶ୍ରୀଯୁକ୍ତ ବ୍ୟାସାହେବ । ମୁଁ ସାମ୍ୟବାଦୀ ନୁହେଁ, ହିନ୍ଦୁ ମହାସଭାର ମେମ୍ବର ନୁହେଁ, କିମ୍ବା ପାକିସ୍ଥାନ-ମୋର ଦାବୀ ନୁହେଁ । ଗତ ଅନେକ ବର୍ଷ ଧରି ଆଜି ଦେଶୀୟ ସରକାର ଗଢ଼ିଲା ପରେ ମଧ୍ୟ ଗାନ୍ଧିଜି, ଜହରଲାଲ, ଆଜାଦ ପ୍ରଭୃତି କର୍ମବୀର ମହାପୁରୁଷମାନେ ଯୋଉ କଥା ଉପରେ ଜୋର ଦେଇ ଦେଶବାସୀଙ୍କୁ ନିଜ ନିଜ ଭିତରେ ସହଯୋଗ କରିବାକୁ ଉଦ୍‌ବୋଧନ ଦେଉଚନ୍ତି, ମୁଁ ଠିକ୍ ସେଇ କଥା କହୁଚି ।

ଚୌଧୁରୀ—କିନ୍ତୁ ଆପଣଙ୍କ ନୀତି ଦେଖୁଚି ପୂର୍ଣ୍ଣ ଅସହଯୋଗ କରିବା । ଏତେବେଳେ ବେଶ୍ ବୁଝିଲି ଜହରବାବୁ । ଆପଣ ଗୋଟାଏ ଦେଶବ୍ୟାପୀ ଅସହଯୋଗ ଆଉ ବିପ୍ଳବ ଚାହାନ୍ତି ।

ଜହର—ଭୁଲ ହେଉଚି । ବିପ୍ଳବର ଦିନ ଯାଇ ଆସିଚି ଶାନ୍ତି ଆଉ ସମାଧାନର ଯୁଗ । ଦେଶରେ ଏ ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତି ସମୟରେ, ଜାତିଧର୍ମସମ୍ପ୍ରଦାୟ ଭୁଲି ହିନ୍ଦୁ, ମୁସଲମାନ ଭାଇ ଭାଇ ହାତକୁ ହାତ ମିଳେଇ ଏକ ଶାନ୍ତିପୂର୍ଣ୍ଣ ସମାଧାନ କରିବା ବେଳ ଆସିଚି । କିନ୍ତୁ ଶ୍ରୀଯୁକ୍ତ ଚୌଧୁରୀ ! ଆପଣଙ୍କ ପରି କେତେକ ସୁବିଧାବାଦୀ ଲୋକ ଆମ ଦେଶରେ ଅଛନ୍ତି, ଯୋଉମାନଙ୍କର ନୀତି ହଉଚି ଦେଶର ଘଡ଼ିସନ୍ଧି ବେଳରେ ବଡ଼ ବଡ଼ ଗାଦି ମାଡ଼ିବସି ଗୋଟାଏ ମଜା ଦେଖିବା । ରାଜନୈତିକ ରଙ୍ଗରେ ଭୋଜି ରହି କେତେ-ବେଳେ ଉପରେ ବା ତଳେ ତା'ର ଗତିବିଧି ଲକ୍ଷ୍ୟକରି ପକ୍ଷ ପରିବର୍ତ୍ତନ ବା ପନ୍ଥା ପରିବର୍ତ୍ତନ କରିବା । ସେମାନଙ୍କର କଂଗ୍ରେସ୍, କମ୍ୟୁନିଷ୍ଟ, ଲିଗ୍, ଫରୱାର୍ଡ଼ ବ୍ଲକ ବୋଲି କିଛି ମୁଣ୍ଡପିଆ ମଧ୍ୟ ନାହିଁ; ଠିକ୍ ଯେମିତି ଲଙ୍ଗରହୀନ ନୌକା ।

ସେମାନେ ଅଡ୍ଭୌ ଗତି ଜାଣନ୍ତି ନାହିଁ, କେବଳ ଭାଙ୍ଗି ଶିଖିଚନ୍ତି ।

ଚୌଧୁରୀ—ତା' ହେଲେ ଆପଣ କଣ କରିବାକୁ ଚାହୁଁଚନ୍ତି ?

ଜହର—ମୁଁ ଚାହେଁନା, ଦେଶ ଚାହେଁ, ଜାତି ଚାହେଁ, ଏ ଯୁଗ ଚାହେଁ । ନେତାଜୀ, ଗାନ୍ଧିଜୀ, ଅମ୍ବେଦକର, ଜିନ୍ନା, ଯୋଶୀ ପାଇଁଠିବା ଆମର ଲକ୍ଷ୍ୟ ନ ହେଉ । ସେହି ମହାଜନମାନେ ଯୋଉ ସବୁ ନିର୍ଦ୍ଦେଶ ଦେଇଛନ୍ତି, ତାକୁଇ ଆଦର୍ଶ କରି ଦେଶସେବା କରିବା ଆମର କର୍ତ୍ତବ୍ୟ । ଲକ୍ଷ୍ୟ ଠିକ୍ ନକରି କେବଳ ହରିରଙ୍ଗୀ ପତାକା ଧରିଲେ ଭାରତମାତାର ଶୃଙ୍ଖଳ ଛୁଟିବ ନାହିଁ, କିମ୍ବା Indiaର ମୂଲ୍ୟ ରହିବ ନାହିଁ ।

ଚୌଧୁରୀ—ଅନେକବେଳ ଧରି ଆପଣଙ୍କର ବକ୍ତୃତା ଶୁଣିଲୁ ଜହରବାବୁ । ଏ ସବୁଥିରେ ଆପଣଙ୍କର ଦଖଲ ଅନେକ ବେଶୀ । ମୁଁ ଜହରର ଲେଖକ ଓ ଧୂମକେତୁର ସମ୍ପାଦକଙ୍କୁ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ ଅନୁରୋଧ କରୁଚି, ସେ ଦୟାକରି ତାଙ୍କର ନୀତି ବଦଳାଇ ଦିଅନ୍ତୁ, ନ ହେଲେ ବିଭ୍ରାଟ ନିଶ୍ଚୟ ଘଟିବ । ମୁଁ ଆଗରୁ କହି ରଖୁଚି ଜହରବାବୁ ।

ଜହର—ବ୍ରିଟିଶ୍ ନୀତି ବୋହଲ ହେଇପାଇଚି ମିଷ୍ଟର ଚୌଧୁରୀ । ମନେ ରଖନ୍ତୁ ବର୍ତ୍ତମାନ ମଧ୍ୟବର୍ତ୍ତୀକାଳୀନ ଦେଶୀୟ ସରକାର, ଅଭ ତାର ନେତା ଜଗତପୂଜ୍ୟ ଜହରଲାଲ୍ । ବ୍ଲାକ୍-ମାର୍କେଟିଂ, ବ୍ଲାକ୍ ମେଲିଂ କରି ଟଙ୍କା ଗଚ୍ଛିତ କରିବାର ସମୟ ଯାଇଚି ଶ୍ରୀଯୁକ୍ତ ଚୌଧୁରୀ । ଶାସନର ଚାବିକି ବର୍ତ୍ତମାନ ଜନପ୍ରିୟ କଂଗ୍ରେସ ହାତରେ—ଯୋଉମାନେ ଦେଖି, ଠିକି, ଶିଖି ଶାସନର ଅଧିକାର ପାଇଚନ୍ତି ।

ଚୌଧୁରୀ—(ହଠାତ୍ ବଜ୍ରତୁଲ୍ୟ କଣ୍ଠରେ) ଜହର !

ଜହର—ଜହର ସବୁବେଳେ ଭୀଷଣ, ସାଙ୍ଘାତିକ । ତା ପଛରେ ଥାଏ ବିପ୍ଳବର ସୂଚନା । ଲାଲ ଆଖି ଦେଖି ଦବିଯିବାର ଉପାଦାନରେ ଜହର ଗଢ଼ା ହୋଇନ ।

ଚୌଧୁରୀ—କିନ୍ତୁ ଜହର ! ମୁଁ ଯେବେ ତୁମକୁ ଲକ୍ଷାଧିକ ଟଙ୍କା ଦବାର ପ୍ରତିଶ୍ରୁତି ଦିଏ ?

ଜହର—ଧନ୍ୟବାଦ ! ଟଙ୍କା ଆପଣଙ୍କର ପ୍ରଧାନ ଅସ୍ତ୍ର ତା ମୁଁ ଜାଣେ । ସେଇ ଟଙ୍କା ବଳରେ ଆପଣଙ୍କର ପୂର୍ବପୁରୁଷ ସୁହୃଦ୍ ବଙ୍ଗରେ ବସି ଓଡ଼ିଶାର ବଡ଼ ବଡ଼ ଜମିଦାରୀମାନ କିଣିପାରିଲେ, ତାର ପ୍ରଲୋଭନରେ ଆପଣମାନେ ମିଲ୍ ଚିମ୍‌ନିର ଧୂଆଁରେ ଗରିବ ଓଡ଼ିଶାର ନେଳ ଆକାଶକୁ ପାଉଁଶିଆ କରିଦେଲେ ।

ଚୌଧୁରୀ—ଜହର ! !

ଜହର—ଅପଣ ଯାଆନ୍ତୁ—ମୁଁ ଆଶା କରୁଛି, ଭଗବାନ ଆପଣଙ୍କୁ ସଦ୍‌ବୁଦ୍ଧି ଦେବେ, ସେଥିବ ଅପଣଙ୍କର ପୂଜା କରିବ ।

ଚୌଧୁରୀ—ତା ସଙ୍ଗେ ସଙ୍ଗେ ତୁମେ ଆଜ ତୁମର ପ୍ରେସ ଧୂଳିରେ ମିଶିଯିବ । ବେଶ ମୁଁ ତା ହେଲେ ଆସୁଛି । (ପ୍ରସ୍ଥାନ)

ଜହର—ବାବୁଆ !

ବାବୁଆ—(ବାହାରୁ) ଅଜ୍ଞା !

ଜହର—ଏଣିକି ଯିଏ ମୋ ସାଙ୍ଗରେ ଦେଖା କରିବାକୁ ଆସିବ ତାକୁ ମନା କରିଦବୁ, ବୁଝିଲୁ ?

ବାବୁଆ—(ବାହାରୁ) ଅଜ୍ଞା ହଁ ।

ଛଗୁ—(ପ୍ରବେଶ କରି) ଅଜ୍ଞା ନା, (ହାତରେ ଜହଜ ବହିଖଣ୍ଡିଏ ଅଛି)

ଜହର—କଣ Copy ଖଣ୍ଡିକୁ ଫେରେଇ ଦେବେ ?

ଛାୟା—ମୋ ବହିଖଣ୍ଡିକ ମତେ ଫେରେଇ ଦିଅନ୍ତୁ । ( ଖାତାଖଣ୍ଡିକ ଟେବୁଲ ଉପରୁ ନେଇ ) ସେ ବହି ଆଜି ଏ ଖାତାଖଣ୍ଡିକ ଗଲାବେଳେ ଛାଡ଼ିଯାଇଛି ।

ଜହର—ଆପଣଙ୍କର କି ବହି କହନ୍ତୁ ତ ?

ଛାୟା—Chemistry—

ଜହର—Chemistry—ମୁଁ ଦେଖିନାହିଁ ତ ?

ଛାୟା—ଆପଣ ନିଶ୍ଚୟ ଦେଖିଚନ୍ତି ଓ ମତେ ହଇରାଣ କରିବା ନିଶ୍ଚୟ ଆପଣଙ୍କର କାମ ।

ଜହର—ଏହା ପରେ ଆପଣ ଆଉ କଣ କହିବାକୁ ଚାହାନ୍ତି ?

ଛାୟା—ମୁଁ କିଛି କହିବାକୁ ଚାହୁଁନାହିଁ, ବହିଖଣ୍ଡି ଫେରିପାଇଲେ ଚାଲିଯିବି ।

ଜହର—ଫେରିଆସି ଆପଣ ଭୁଲ କରିଚନ୍ତି—ବାସ୍ତବେ ବୋଧହୁଏ ଆପଣଙ୍କର ବହିଖଣ୍ଡି ହରଣଚାଲି ହେଇଛି ।

ଛାୟା—କିନ୍ତୁ ମୁଁ ଏତେଶୀଘ୍ର ଠକିଯିବା ଝିଅ ନୁହେଁ—ନିତାନ୍ତ ଅଜଣା, ଅଶୁଣା ଲୋକ ସାଙ୍ଗରେ ଏମିତି ବ୍ୟବହାର କରିବାକୁ ଆପଣମାନେ କଣ ଗୌରବ ମନେ କରନ୍ତି ?

ଜହର—ମୋ କଥା ବିଶ୍ବାସ ହେଉନାହିଁ ? ବେଶ୍ ଆପଣଙ୍କର ଇଚ୍ଛା— (ପ୍ରସ୍ଥାନୋଦ୍ୟତ)

ଛାୟା—(ପଛରୁ ଚିତ୍କାର କରି) ଦେଖନ୍ତୁ ବହିଖଣ୍ଡିକ ତ ଯାଇଛି । ଏ ଖାତାଖଣ୍ଡିକ ମଧ୍ୟ ଆପଣଙ୍କ ଟେବୁଲ ଉପରେ ରହିଲା, ( ଖୋଲିବା ସାଙ୍ଗେ ସାଙ୍ଗେ Chemistry ଖଣ୍ଡିକ ମିଳିଲା ) କି ସର୍ବନାଶ ! ବହିଖଣ୍ଡିକ ମୁଁ ପାଇଛି । ଦେଖନ୍ତୁ ମୋର ବ୍ୟବହାର ପାଇଁ ମୁଁ ଦୁଃଖିତ । ମତେ କ୍ଷମା କରିବେ । ( କଥା ସରିବା ପୂର୍ବରୁ ଜହର ସିଡ଼ିବାହି ଦୋତାଲାକୁ ଚାଲିଯାଇଥିଲା )

---

## ଦ୍ୱିତୀୟ ଦୃଶ୍ୟ

( ଘନଶ୍ୟାମଙ୍କ ଘର ସମ୍ମୁଖ ଅଗଣା )

(କଥାବାର୍ତ୍ତା କରୁ କରୁ ପ୍ରବେଶ କଲେ ଘନଶ୍ୟାମଙ୍କ ଦ୍ୱିତୀୟପକ୍ଷ ସ୍ତ୍ରୀ, ପିଅରମଣି ଓ ପ୍ରାଣନାଥ )

ପିଅର—ବୁଝିଲ୍ ନାଥ ! ବେଶି ଡେରି ନ ହୁଏ ଯେମିତ । ବଣିଅକୁ କହିବୁ ୩୦ ଦିନ ଭିତରେ ଗଢ଼ିଦବ । ଏତେ ବଡ଼ ଯାତରା ପା', ବାଜୁ ନ ହେଲେ ମୁଁ ଖାଲି ଗୋଡ଼ରେ ଯିବି କେମିତ ?

ପ୍ରାଣନାଥ—କିଛି ଚିନ୍ତା ନାହିଁ ବଡ଼ ମା ! ଠିକ୍ ରବିବାର ଦିନ ମୁଁ ତୁମର ପା'ବାଜୁ ଆଜି ଚଉଁରା କୁଣ୍ଡି ଦେଇଯିବି । ତୁମେ ଟଙ୍କା ଦିଅ—

ପିଅର—(ତାନରୁ ଟଙ୍କା କାଢ଼ି ନାଥ ହାତରେ ଦେଲାବେଳେ ପଛଅଡ଼ୁ ହୁକାନଳୀ ଧରି ଘନଶ୍ୟାମଙ୍କର ପ୍ରବେଶ) ନେ, ଭଲକରି ଦେଖିନେ—

ଘନଶ୍ୟାମ—ଦେଖିଲଣି—ଦେଖିଲଣି— ଖାଲି ଦେଖିନାହିଁ—ସବୁ ଶୁଣିଛ ବି, ଅଖିରେ ଠିକେ ଭଲ୍ ଦେଖେ ବୋଲି ତୁମେ ମୋ ଅଖି ଦିଇଟାକୁ ଫାଙ୍କି ଦେଇପାର, କିନ୍ତୁ ମୋର କାନ ଦୁଇଟାକୁ ତୁମେ ଫାଙ୍କି ଦେଇ ପାରିବ ନାହିଁ । (ଅଖି ଦୁଇଟା ତାଙ୍କର defective ) ହଇହୋ, ପ୍ରାଣନାଥ ! ତୁମେ ଏଥର ଆମ ଘରର ନାଥ ହେଲଣି ନା କଣ ?

ପ୍ରାଣନାଥ—ନାହିଁ ବଡ଼ବାପା ! ମୁଁ—ମୁଁ—ଡାକ୍ତର ବାବୁଙ୍କୁ ଡାକିବାକୁ ଅସିଥିଲି ।

ଘନଶ୍ୟାମ—ତୁ ଗୋଟେ ଅସଲ୍ ଗଣ୍ଡିକଟା । (ପ୍ରାଣନାଥ ହାତରୁ ଟଙ୍କା କାଢ଼ିନେଇ) ଯଣ୍ଡ ବୋଡ଼ ! ଏସବୁ କଣ ହେଉଚ ? ମୋ ଟଙ୍କାଗୁଡ଼ାକ ଉଡ଼ାଇବାକୁ ଏଇ ବାଟ ପାଇଲ ?

ପିଅର—ତୁମର ଟଙ୍କା ନୁହେଁ । ଗହଣା ଗଢ଼ାଇବାକୁ ମୁଁ ମୋ ଟଙ୍କାରୁ ଦେଇଚ ।

ଘନଶ୍ୟାମ—ତୁମର ଗୋଟାଏ ଅଲଗା ପାଣ୍ଠି କଲଣି ନା କଣ ? ମତେ ଲୁଚେଇ ମୋର ଟଙ୍କାରେ ଗୈରୁ ମାହାଜନୀ କାରବାର ଚଳେଇଲଣି ପରା ।

ପିଅର—ତୁମେ ଯେମିତ ଧାନଗୃଜଲ କାରବାର ଚଳେଇଚ, ଛି, ଛି, ଏମିତ ଦୋଷଦଅ ମଣିଷ ମୁଁ ମୋ ଦାହକରେ ଦେଖି ନ ଥିଲି । ଘର କର ପଇସା ଖରି ଉପରେ ଓଷା, ବାର, ପୂଜେଇ ପର୍ବ ସବୁ ତ ରହିଲା ଗଲା । କାଲକେ ଭଲ ଲୁଗା ଖଣ୍ଡେ ଦାହ ଦେଖିଲି ନାହିଁ । ସେଥିରେ ଯେବେ ଗୋଟାଏ ଗହଣା ଗଣ୍ଠି କରିବାକୁ ମନେ କଲିତ ଲାଗିଲା ପାଲା । ଦିଅ, ନାଥକୁ ଟଙ୍କା ଫେରେଇ ଦିଅ । ଯା ବାବୁ, ଶଙ୍ଖବଳୁଣ୍ଡି ନଅଣିଲେ ମୁଁ ଏଳକଣା ମେଲଣକୁ ଯାଇ ପାରିବ ନାହିଁ ।

ଘନଶ୍ୟାମ—ତୁମର ଅଉ କୋଉ ସଉକରେ ଉଣା ଅଛି କ ? ଶଙ୍ଖବଳୁଣ୍ଡି ପିନ୍ଧାଣିଆ ପିନ୍ଧ, ମୁଣ୍ଡରେ ପୁଲ୍ଝା ତେଲ ଲଗେଇ ଯାବାକୁ ନଗଲେ, ଲୋକେ ଦେଖିବେ କମିତ ? ଜାଣିବେ କମିତ ?

ପିଅର—ହଁ ! ତୁମର ଯୋଉ ପୋଡ଼ା କଥା । ତୁମେ ସିନା ବୁଢ଼ା ହେଲଣି ଯେ ତୁମର ଭଲ ଖାଇବା ପିଇବାକୁ ସଉକ ନାହିଁ । ଘରେ ସମସ୍ତିଙ୍କି କଅଁ ଅରୁଚ ହବ ?

ଘନ—ଜଣ୍ଡବୋଉ ! ସଉକ କରିବାକୁ ମୁଁ ତୁମକୁ ପଛରେ ବାହା-
ହେଇ ନଥିଲି । କୋଉଠର ବୋଉ ଥିଲା ଘରର ଲକ୍ଷ୍ମୀ । ସେ
ମରିଯାଇ ନଥିଲେ ତୁମ ଭଳିଆ ଗୋଟାଏ ଅପଟଣ୍ଡ୍ରକୁ
ଘରକୁ ଆଣି ନଥା'ନ୍ତି । ହୁଁ, ଯେତେସବୁ ବଜାରୁ କଥା !

ପିଅର—ଏଁ, ମୁହଁରେ କଣ ବାଡ଼ ବତା ରହୁନାହିଁ କି ମଣିପର ?
ମୁଁ ବଂଜାର୍ ?

ଘନ—ହିଁ, ହିଁ ତୁମେ ବଜାରୁ, ତୁମର ଗୋଷ୍ଠି ବଜାରୁ, ତୁମର
ଚୌଦପୁରୁଷ ବଜାରୁ, ତୁମର ଅଠାନବେ ପୁରୁଷ ବଜାରୁ ।

ପିଅର—କଣ ହେଲା ? କେତେଟା ଟଙ୍କା ସକାଶେ ତୁମେ ମୋ ବାପ-
ଙ୍କର ଚୌଦପୁରୁଷ ପାଁ ଧରିଲ ? ଫୁଲ୍‌କି ତେଲ ମୁଁ କଣ
ମୁଣ୍ଡରେ ଲଗେଇ ନେଇ ନା ଗହଣା ପିନ୍ଧି ନେଇ ମ ?

ଘନ—ଯା ପିଅଡ଼େ, ଏଠି ପୁରୁଣ ପେଣ୍ଡ ପିଠା ନେଇ, ଭାଇଭଗାଙ୍କୁ
ହସିବେ । ଏ ନାଥିଆ ! ତୁ ଏଠୁ ଗଲୁ ।

ନାଥ—ନାହିଁ ବଡ଼ପା, ମୁଁ ପରା ଜ୍ୟୋତିବାବୁଙ୍କୁ ଡାକିବାକୁ ଆସିଛି ।

ପିଅର—ଯେତେବେ ଭଲ ଗଡ ଅଛୁ ମୋ ଟଙ୍କା ଦେଇଦିଅ ନାହିଁତ ମୁଁ
କିଛି ବାକି ରଖିବି ନାହିଁ ।

ଘନ—ତୁମେ ଆଉ କଣ ବାକି ରଖିଛ କି ? କେତେଟା ଦିନ ଭିତରେ
ମୋ ଘରଟାକୁ ତ ଗୋଟା ଧର୍ମଶାଳା କରି ସାରିଲଣି ।
କେହି ତ ମଣିଷ ନୁହଁ, ସମସ୍ତେ ଗୋରୁ । ( ନାଥିଆ ପ୍ରତି )
ଏ ହାରମଜାଦା ! ତୁ ଆଜ ଛୁଡ଼ା ହେଉଚୁ କାହିଁକି ?

ନାଥ—ମୁଁ ଜ୍ୟୋତିବାବୁଙ୍କୁ ଡାକିବାକୁ ଆସିଛି ।

ଘନ—ଯା, ଏଠୁ ସିଧା ଚାଲିଯା । ତୁମମାନଙ୍କ ସାଙ୍ଗରେ ମିଶିକି
ପୁଅ ମୋର ମଣିଷ ହେଉନାହିଁ । ତୁମେମାନେ ତାକୁ ଖରାପ
କରିଦିଅ ।

ପିଅର—ପୁଅ ତ ତୁମର ଭାରି ଭଲ । ମୋର ଏଇ କେତେଟା ଟଙ୍କା ସକାଣେ ତୁମର ତ ସବୁ ସବ ଯାଉଚ । ତେଣେ ଘର ଭିତରର ଖବର କିଛି ରଖିଚ ? ବୋହୂ ସକାଣେ ଜ୍ୟୋସ୍ନା କେତେ ଟଙ୍କା ଖରଚ କରେ, ସେ କଥା ତୁମେ ଜାଣିଚ ? ପଇସାଟିଏ ରୋଜଗାର କରିବାର ସାଣ୍ଟ ନାହିଁ, ହେଲେ ଭାରିଯାପାଇଁ ଅଣ୍ଡ ଦକ୍ଷିଣି କୁମ୍ଭପଡ଼ା ଶାଢ଼ୀ, କାଲି ଚନ୍ଦ୍ରବୁଣା ନାଲି କସ୍ତା, ଏ ସବୁ କାହା ପାଣ୍ଠି ?

ଘନ—ସତେ ନା କଣ ?

ପିଅର—ସତ ନୁହେଁ ଅଜ କଣ ବୋ ନାଁରେ ମିଛ କହୁଚ ? ମତେ ମିଛରେ ଚୁଗୁଲ୍ କର ଅସେନା । ବୁଝିଲ ?

ଘନ—ବୁଝିଲଣି, ବୁଝିଲଣି । ଯାଅ ଭିତରକୁ ଯାଅ ! ମୁଁ ଏ ଟଙ୍କା ଫେରନ୍ତ ଦେଇ ପାରିବି ନାହିଁ । ନାଥିଆ ! ତୁ ଗୁଣ୍ଡପା ! ଆମର ଗହଣା ଗାଣ୍ଠି କିଛି ଅସିବ ନାହିଁ । ଦଲାଲି କର ମଝିରେ ତୁ କିଛି ମୁନାଫା ଉଠେଇବାକୁ ବସିଚୁ, ନା ?

ନାଥ—ନାଇଁ ବଡ଼ପା, ଗୋବିନ୍ଦା ବଣିଆ ସଙ୍ଗରେ ମୋର ଭାବ-ନାଭ ଅଛି । ସେଇଥିପାଇଁ ଜାଣିଷପନ୍ତରେ ସେ ମତେ ଠକାଏ ନାଇଁ ।

ଘନ—ନାଃ, ଠକାଏ ନାଇଁ । ଠକାମି ନ କଲେ ବଣିଆ ତା ବ୍ୟବସାୟ କରପାରିବ ? କଥାରେ ଅଛି ଖଣ୍ଡ ନ ଦେଖିଲେ ବଣିଆ ଦେଖ୍ । ହଇରେ, ତୋ ଦାହକଣେ ଭଲ ତୁ କେତେଟା ଗହଣା କଲୁଣି !

ନାଥ—(ହସି) ନାଇଁ ବଡ଼ବାପା ! ନୂଆବୋହୂ କାନକୁ ଜ୍ୟୋସ୍ନାବାବୁ ଯୋଉଁ ଫୁଲଝର ବରଦ ଦେଇଥିଲେ ମୁଁ ତାକୁ ଗଢ଼େଇ ଆଣି ଦେଇଚି । ରାଧାକୁ କେଡ଼େ ସୁନ୍ଦର ମାନୁଚି ଦେଖିଚ ?

ପିଅର—ଶୁଣିଲ ପୁଅଙ୍କ ଗୁଣ ? ବୋହୂର କାନ ଗହଣା ଗଢ଼ା ହେଉଛି । ଗଙ୍ଗାବ ନାଅଂଶୀ ଘର ଝିଅ କପାଳ ଗୁଣେ ବଡ଼-ଘରେ ପଡ଼ିଛି ବୋଲି ତାର ପୁଣି ଫୁଲଫଁରରେ ସଜ୍ଜିତ ହେଲଣି । ଆଜ ଯେବେ ଆମମାନଙ୍କ ପର ବଡ଼ଘରୁ ଅସିଥାନ୍ତା କେତେ ମନ ନ କରୁ ଥାଆନ୍ତାଟି ।

ଘନ—ତୁମେ ଏମିତି ଡୋଳ ହାକିମଘର ଝିଅ କି ? ପୁଅର ଯୋଉଟି ମନ ମାନିଲା ସେଇଟି ମୁଁ ତାର ବାହାଘର କଲି । ବଡ଼ ଘର ଝିଅ ନହେଉ, ବାପ ଭାଇ କେହି ନଥାନ୍ତୁ ପଛକେ ଏମିତିକା ଗୁଣର ବୋହୂ ଗୋଟିଏ ତୁମେ ଅଜ ଜୋଜଠୁ ପାଇ ନଥାନ୍ତ ।

ପିଅର—ମଲ, ବୋହୂ ତୁମର କ ମାଈକୁ ମ ବୋଲି କହେ ନାହିଁ ? ଶୁଣ ରେ ନାଥ ! ତୋ ବଡ଼ ବାପାଙ୍କ କଥା ? ବାହାଘରର ବର୍ଷେ ନ ପୂରୁଣୁ ନଅଣଖାଇର ତୁଣ୍ଡ ପଦ ଶୁଭିଲଣି ! ତୁମେ କହୁଚ କଣ ନା ଗୁଣର ବୋହୂ !

ଘନ—ତୁମର ଗୁଣରୁ ତାର ତୁଣ୍ଡ ଶୁଭୁଛି । ସବୁବେଳେ ଜଣକ ସାଙ୍ଗରେ କଟର କଟର ଲଗେଇଲେ ପଥରଟାଏ ହେଇଥାଉ ପଛକେ ଅଳବତ୍ତ ଜବାବ ଦବ ।

ନାଥ—ହଁ ତା ଠିକ୍ ବଡ଼ଯା । ଘରର ବୋହୂ, ନୂଅ ଭୂଅ, ବଡ଼ ମା ତାଙ୍କୁ ଯେମିତି ଚଳେଇବେ ସେ ସେମିତି ଚଳିବ (ପିଅରମଣିଙ୍କର ବିରକ୍ତିପୂର୍ଣ୍ଣ ନୟନ ଦେଖି) ତେବେ ଶିଖେଇ ଶିଖେଇ ବୋହୂ ଯେବେ ନ ଶିଖିବ ସେଥିକି ବଡ଼ମାଅଙ୍କର ଅଉ ବଳ କଣ ?

ଘନ—ତୋଠୁଁ ମୁଁ ଅକ୍କଲ ଶିଖିବାକୁ ଗୁହୁଁ ନେଇଁ—ଆମ ଘର କଥା ଉପରେ କଥା କହିବାକୁ ତୁ କିଏ ରେ ହତଭାଗା ?

ତୋର ଟିକିଏ ବଡ଼ ସାନ ଜ୍ଞାନ ନାହିଁ ? ହାରମଜାଦା କୋଉଠିକାର (ନାଥର ପଳାୟନ) । ହିଁ ଦେଖ ଜଣ ବୋଲ, ଏଣିକି ଏ ସବୁ ଦୁର୍ବୁଦ୍ଧି ତୁମର ଯେମିତ ନ ହୁଏ । ପେଟକୁ ନ ଖାଇ ମୁଁ ଯେ କୋଟିଏ ଗୋଟିଏ କରି ସଞ୍ଚୁଛି, ମଲାବେଳେ ମଶାଣିକି ନେଇଯିବି ନାହିଁ । ଜଗିରଖି ଚଳିଲେ ତୁମରମାନଙ୍କ କାମରେ ଆସିବ ।

ପିଅର—ଯାହାଙ୍କର କାମରେ ଆସିବ ତାଙ୍କର ପାଇଁ ସାଇତି ରଖୁଥା, ମୋର ସେଥିରେ ଦରକାର ନାହିଁ । ମୁଁ ତ ତମର କେହି ନୁହେଁ । ମୋ ସକାଶେ ଏତେ ଦହ ମିହନ୍ତ କାହିଁକି ? (କୃତ୍ରିମ ଅଭିମାନରେ) ।

ଘନ—ମାଇକିନିଅର ଆଖି ପାଣି ଦେଖି ନରମି ଯିବାକୁ ମୋ ବାପ ମତେ ଶିଖେଇନ, କିମ୍ବା ମୁଁ ନିଜେ ଶିଖିନି । ତୁମେ ଯାଅ ଏଠୁ, ଘର କଣରେ ବସି ଆଖି ଲୁହ ଗଡ଼େଇବ । ତୁମମାନଙ୍କର କାଣ୍ଡ କାରଖାନା ଦେଖି ମୋ ଦହରେ ନିଆଁ ଲାଗି ଯାଉଛି ।

ପିଅର—(କିଛି ନ କହି ରାଗରେ ଦୁମ୍ ଦୁମ୍ ହୋଇ ଚାଲିଗଲା) ।

ଘନ—(ହେଇ ଅଡ଼କୁ ଚାହିଁ) ଆରେ, ଝରଦ୍ୱାର ତ ମୋର ବୋହୂ ନେଇଯିବେ । ଯେତେ ସବୁ ଅପଦ ବିପଦ ଆସି ଜୁଣ୍ଡ ହଜଚନ୍ଦ୍ର ମୋର ଘରେ । ଗୋଟାଏ ସବେଇ ଖାନା ହେଉଛି ନା ? ଅଛି—

( ବିପରୀତ ଦିଗରୁ ପ୍ରବେଶ କଲା ଜ୍ୟୋତିଷ )

କୋଉଆ କୁଆଡ଼େ ଯାଉଛୁ ?

ଜ୍ୟୋତି—ସ୍କୁଲ ଘରେ ଗାଁବାଲା ଗୋଟାଏ ସଭା କରୁଛନ୍ତି, ସେଇଠିକି ଯାଉଛି ।

ଘନ—ଚାଉଁଳ ? ତୋର ସେଥିରେ କଣ ଅଛି ? ସେସବୁ କଂଗ୍ରେସିଙ୍କ କାମ । ତୁ ଯା ଠିକେ ଷ୍ଟେସନକୁ ଧାନଗୁଡ଼ା କେମିତ ଗ୍ଭଲଣ ହବ ତାର ବନ୍ଦୋବସ୍ତ କରବକୁ । ତେଣେ ଚୌଧୁରୀଙ୍କ ମିଲ୍‌ର ମଜୁରିଆମାନେ ମେଲ କରଚନ୍ତି । ସେଥିରେ ଅମେ ଗ୍ଭଉମଚ ଧାନ ଯୋଗେଇ ନ ପାରଲେ, ଜମିଦାର ସେ, ଥଳ କୂଳ ରଖିବେଟି ?

ଜ୍ୟୋତି—ବାପା, ତୁମେ ଏସବୁ କାମରେ ଅଉ ହାତ ଦିଅ ନାହିଁ । ଜମିଦାରଙ୍କୁ ଖୁସି କରବାକୁ ଯାଇ, ତାଙ୍କ ମିଲ୍‌କୁ ଧାନ ଗ୍ଭଲାନ ଓ ଲୋକବାଳ ଯୋଗେଇବାକୁ ଯାଇ ଗାଁରେ ସମସ୍ତଙ୍କ ଅପ୍ରିୟଭାଜନ ହବା ଅସୁନ୍ଦର କଥା ।

ଘନ—ଜକଥା ! କଣ କହୁଚୁ ତୁ ?

ଜ୍ୟୋତି—ମୁଁ ଅନ୍ୟାୟ କହୁନାହିଁ ବାପା । ଗରିବ ନିରନ୍ନ ଲୋକଙ୍କର ତଣ୍ଟିଚିପି ତାଙ୍କର ଦାନାରେ ଧୂଳି ଦେଇ ମଫସଲରେ ଚଢ଼ାଦରରେ ଅଡଙ୍କ ସୃଷ୍ଟିକର ଠିକା ବେପାର କରବାର ପକ୍ଷପାତୀ ମୁଁ ନୁହେଁ ।

ଘନ—ବୁଢ଼ା ବୟସରେ ମୁଁ ମୋ ନିଜ ସୁଖ ସୁବିଧା ଲାଗି ଏ ବ୍ୟବସାୟ କରୁନାହିଁ ।

ଜ୍ୟୋତି—ତୁମେ ମୋ ପାଇଁ ଏପରି ଶ୍ରମ କରୁଚ ଅଉ ସେଇଥିପାଇଁ ମୁଁ ପ୍ରତିବାଦ କରବାକୁ ସାହସ କରୁଚି । ବର୍ତ୍ତମାନ ଦେଶର ଯାହା ଅବସ୍ଥା, ଗରିବ ନିରନ୍ନଙ୍କୁ ସାହାଯ୍ୟ କରବାରେ ତୁମର ଗୌରବ ବଢ଼ିବ ବାପା !

ଘନ—ଚୁପ୍ କର । ମୁଁ ତୋଠୁ ଦେଶ କଥା ଶୁଣିବାକୁ ଚାହେଁ ନା । ପଇସା କେଉଁଠୁ ଆସିବ ଘରକୁ ଅସୁଚ ସେଇଟି ତୁ ଯଦି ବୁଝନ୍ତୁ, ତା'ହେଲେ ତୋ ମୁଣ୍ଡରେ ଏମିତିଆ କଥା ଆସନ୍ତା

ନାହିଁ, ଲୋକେ ଅକର୍ମା ହେଲେ ତା ମୁହଁରେ ଦେଶ କଥା ଶୁଣାଯାଏ । ଜାଣିଥା, ମୁଁ ଯାହା କହୁଛି ତୁ ସେଇଆ କର, ତା'ହେଲେ ମଣିଷ ହୋଇ ପାରିବୁ ।

ଜ୍ୟୋତି—ରୋଜଗାର କରିବାର ଅନ୍ତର ଅନେକ ବାଟ ଅଛି ବାପା ।

ଘନ—ସେଇଥିପାଇଁ ତୁ ଅକର୍ମା ହୋଇ ବସିଚୁ । ମତେ ବାଟ ଦେଖେଇବା ଦରକାର ନାହିଁ, ମୋର ଧନବଳ ମାଡ଼ ଅଛୁ ନାହିଁ । ଦୁନିଆରେ ମଣିଷ ହୋଇ ଦଶ ପଇସା ରୋଜଗାର କରି କେମିତି ପାଞ୍ଚଜଣଙ୍କ ସାଙ୍ଗରେ ଜଣେ ହୋଇ ଭଲରେ ଚଳିବୁ, ସେତକ ମୋର ଦେଖିବାର କଥା ।

ଜ୍ୟୋତି—ହେଲେ ବାପା ! ମୁଁ ଏ ଠାନ ଗୁଜ଼ୁଳ ବେପାର କରିପାରିବି ନାହିଁ ।

ଘନ—ତା'ହେଲେ କଣ କରିବୁ ଶୁଣେ ? ବେପାର କରିବୁ ନାହିଁ, ଗୁହାର କରିବୁ ନାହିଁ, ଫେର ରୋଜଗାର ବାଟ କୋଉଟି ? ଘରେ ବସି ଗୁଡ଼େ କଂଗ୍ରେସିଆ ଖିଆଲ ମୁଣ୍ଡରେ ପୂରେଇ ମୋ ଟଙ୍କାର ଶ୍ରାଦ୍ଧ କରିବୁ ତ ? ମାଗିଖିଆ ଛତରଙ୍କର ମର୍ଜି ଜଗି ନଚଳିଲେ ମୋ ସପ୍ତପୁରୁଷ ଉଦ୍ଧାର ହେବେ କେମିତି ? ମତେ ଆସିଲୁ ବୁଦ୍ଧି ଦବାକୁ ! କୁଳାଙ୍ଗାର !

ଜ୍ୟୋତି—ବାପା !

ଘନ—ମୁଁ କହୁଛି ଷ୍ଟେସନକୁ ଯା—ଏ ବ୍ୟବସାୟ ତତେ ଚଳେଇବାକୁ ହବ । ମୁଁ ଜାଣେ କାରବାରରେ ଘରେ ବସି ଯୋଉ ରୋଜଗାର କରିହୁଏ, ସାତ ସାତୁଟା ଗୁହାର କରି ସୁଦ୍ଧା ହୁଏନା—ତା ଛଡ଼ା ଶ୍ରୀଯୁକ୍ତ ଅମଳ ଚୌଧୁରୀ ଏ ଅଞ୍ଚଳ ପାଖ ପାଞ୍ଚ ଦଶ ଖଣ୍ଡ ଗାଁର ଜମିଦାର । ଅସମୟରେ ତାଙ୍କୁ ସାହାଯ୍ୟ କରିବା ଆମର କାମ । ସେଥିରେ ଆମର ଲାଭ ଛଡ଼ା କ୍ଷତି ନାହିଁ ।

( ପ୍ରତିବାଦ ନ କରି କ୍ୟାଶମେମୋ ଗୁଡ଼ିକ ଗଣି ) ବାଃ, ଖାସା ବ୍ୟବସ୍ଥା ହୋଇଛି ତ ! କାହାର ରୋଜଗାରର ଜମାଖର୍ଚ୍ଚ ନାହିଁ ! ଅଥଚ ସମସ୍ତେ ବେଶ୍ ଖର୍ଚ୍ଚ କରି ଶିଖିଛନ୍ତି । ଅଚ୍ଛା ! ଜଗତଚୋର ! ଜଗତଚୋର !

( ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

—ଘନଶ୍ୟାମଙ୍କ ଗୃହର ଅଭ୍ୟନ୍ତରସ୍ଥ କକ୍ଷ—

[ ଦିନ୍ ଉଠିଲା ବେଳକୁ ଦେଖାଗଲା, ପାନ ପାତ୍ରରୁଅ ନେଇ ରାଧା ପାନ ଭାଙ୍ଗୁଛି, ପ୍ରବେଶ କଲେ ପିଅରମଣି ]

ପିଅର—ମଲା, ପାନ ଭଙ୍ଗା ଜଣା ସରି ନାହିଁ କି ? ସେ ତେଣେ ଦାନ୍ତ କମାଉଛନ୍ତି, ଅନେକ ଏତେ ଗୋଟା ଲମ୍ବେଇ ବସନା ମ !

ରାଧା—ନାହିଁ ବୋଉ, ମୋର ପାନ ଭଙ୍ଗା ସରିଲାଣି ।

ପିଅର—ସରିଲାଣି ତ ବସିଛୁ କାହିଁକି ? ମାଇକିନିଆ ଝିଅ; ସବୁବେଳେ ଏତେ ଭାବନା କଣ ତୋର ? ଯେବେ ରାଣୀ ହେବାକୁ ମନ, ଘରର କାମ ଦାମ ସାରିଦେଇ ବସିଲେ ହୁଅନ୍ତା ନାହିଁ ? ଛି, ଛି, ଧନଭରା ପରିଶ୍ରମର ମୁଁ ଆଉ ବଡ଼ର ବଡ଼ର ହୋଇପାରିବି ନା । କହିଲେ ତ ମୋ ତୁଣ୍ଡ ଦୁଷ୍ଟ ।

ରାଧା—ତୁମେ ଯାଅ, ମୁଁ ଯାଉଛି ମୋ କାମ କରିବି ।

ପିଅର—ପାନ ପାତ୍ରରୁଅ ହେବ ଟା କଣ ଏଇଠି ପଡ଼ିଥିବ ? ତୋର ତ ଘର କରଣା ବୁଦ୍ଧି କେମିତି ହଉନାହିଁ କେ । ସବୁ କରିବି, ଧରିବି, ସେଥିରେ ଢୋଉ ଉଥାଟା କରିବାକୁ କହିଲି ତ

ବାଡ଼ଇରି ନ ଦେଲେ ହବ ନାହିଁ । କିଅଁ ସ ? ମୁଁ କଣ ଏ ଘରର ପୋଇଲୀ ନା ପରବାସି ?

ରାଧା—( ପାନଡାଲା ଖଣ୍ଡେ ତଳେ ସାଇତି ଦେଇ ) ମୁଁ ତ ତୁମକୁ କିଛି କହିନାହିଁ ବୋଉ ! ତୁମେ ମୋ ସାଙ୍ଗରେ ମିଛଟାରେ କାହିଁକି ଲାଗିଛ ଭଲା ?

ପିଅର—କଣ କହିଲୁ ନାଅଂଶୀଘାରି ଝିଅ ? ତୋ ସାଙ୍ଗରେ ମୁଁ ମିଛରେ ଲାଗିଛି କି ? ବାହାଘରର ବର୍ଷେ ନ ପୂରୁଣୁ ତୋର ତ ବେଶ୍ ମୁହଁ ଫିଟିଲାଣି । ଥରେ ଦେଖିବ ଆସ, ବୋହୂ ପରି ମାଛକୁ ମ' କହେ ନାହିଁ କି ଢାଳେ ପାଣିକି ଗୋଡ଼ ବଢ଼ାଏ ନାହିଁ !

ରାଧା—ମୋର ତ କିଛି ଦୋଷ ନାହିଁ । ଘରର କୋଉ କାମଟା ମୁଁ ନ କରୁଛି ଭଲା ?

ପିଅର—ହଉ ହଉରେ ଲୋ, ସବୁ କରୁଚୁ । ଘରର ବୋହୂ ଆଜି କଣ୍ଠି କରନ୍ତୁ ନାହିଁ କି ? ଦେ ପାନ ଦେ...ପହରେ ହେଲା ପାନଭଙ୍ଗା ଖାଇବାକୁ ନାହିଁ... ( ପାନ ନେଇ ) ମୁଁ ଯାଉଛି, ତାଙ୍କୁ ସେଇ କଥା କହି ଦେଇ ଆସେଁ—ବୋହୂକୁ ଯେବେ ରାଣୀ କରେଇବାକୁ ମନ, ମାଣକୁ ପୋଇଲୀ ଖଞ୍ଜେଇ ଦିଅନ୍ତୁ । ( ପ୍ରସ୍ଥାନ )

( ପିଅରମଣି ଗୃହାନ୍ତେ ପରେ ରାଧା ହେଳେଅଡ଼କୁ ଗୃହ ଦାଣ୍ଡେ ଛୁଡ଼ାଇଦେଲା, ତା'ପରେ ନିଜର ଜୀବନ କଥା ଭାବି ଲଗା କାନରେ ଆଖି ଲୁହ ପୋଛି ପିବାକୁ ବସିଲା—କେଦାରଙ୍କ ପ୍ରବେଶ )

କେଦାର—ଶୁଣିଲି, ରାଧା !

ରାଧା— ( ଫେରିପଡ଼ି ) କିଅଁ ?

ଜ୍ୟୋତି—( ରାଧାର ବିଷଣ୍ଣ ମୁଖ ଦେଖି ) କଣ ହେଉଛି ରାଧା ? ତୋ ମନ ଭଲ ନାହିଁ ନା କଣ ?

ରାଧା—ଖୁବ୍ ଭଲ ଅଛି, ବଡ଼ଘର, ଗାଈ, ଗୋରୁ, କଂସାବାସନ ଲୁଗାପଟା ଭୋଗଥିବେ ମୋର ଅଭାବ ନାହିଁ, ମୁଁ ବେଶ୍ ଭଲ ଅଛି । ଘରେ ଗୃହର ଗୃହବଧୂଅଣୀ ଥିଲେ ଖାଇ ପିଇ ଯେମିତି ଖୁସିରେ ଚଳନ୍ତି, ମୁଁ ବି ସେମିତି ଜଣେ ହୋଇ ଚଳି ଯାଉଛି ।

ଜ୍ୟୋତି—ମୁଁ ଜାଣେ ରାଧା ! ତୁ ଅନେକ କଷ୍ଟ ପାଉଚୁ, ବହୁତ ଗଞ୍ଜଣା ସହୁଚୁ । ଭାବିଥିଲି ଆମ ଘରକୁ ଆସି ତୁ ସୁଖରେ ରହିବୁ···ହେଲେ ବୋଉ ତୋ ସାଙ୍ଗରେ···

ରାଧା—ବୋଉଙ୍କର କିଛି ଦୋଷ ନାହିଁ, ସବୁ ଦୋଷ ମୋ କପାଳର । ( କାନ୍ଦ କାନ୍ଦ ହୋଇ ) ରାଧା ଗରିବ ଲାଅଂଶୀ ଘର ଝିଅ— ବାପ, ଭାଇ, ମା ନିଜର ବୋଲି ତାର କେହି ନାହିଁ । ଘରର ଗୃହବଧୂଅଣୀ ପର ସବୁକାମ କରି ସୁଦ୍ଧା ତାର ଦୁଃଖ କଣ, ଦିନେ ହେ କଥା ବୁଝିଚ ? ବାହାରେ ବାହାରେ ତୁମେ ସମୟ କଟାଅ, ଏଣେ ଘରେ ସବୁବେଳେ—

ଜ୍ୟୋତି—ସବୁ ମୁଁ ଜାଣେ ରାଧା, ପ୍ରତ୍ୟେକ କଥାରେ ବୋଉ ତତେ ଦୋଷ ଦିଏ, ଗାଳି ଦିଏ—ଜାଣି ଶୁଣି ମୁଁ ପାଟି ଫିଟାଏ ନାହିଁ । ମୁଁ ଯେବେ ତୋ ପକ୍ଷ ନେଇ କିଛି କହିବି, ତା'ହେଲେ ବୋଉ ଆଉ କିଛି ବାକି ରଖିବ ନାହିଁ । ସହଜେ ଘରେ ବେକାର ହୋଇ ବସିଚି ବୋଲି ବାପା ମୋ ଉପରେ ରଗୁଚନ୍ତି—

ରାଧା—ମୋ ପକ୍ଷ ନେଇ ବାହାର ହାତରେ ଲଢେଇ କରିବାକୁ ମୁଁ କହୁନାହିଁ, ମୋ ଅର୍ଜିଲା କର୍ମ ମୁଁ ଭୁଞ୍ଜିବି, ତୁମେ କୁଆଡ଼େ

ଯାଇ କିଛି ରୋଜଗାର ମନ କର, ବାପା ବୋଉଙ୍କ ମନ ଖୁସି ହବ । ସେମାନଙ୍କ ମନ ନେଇ ତୁମର କାମ କରିବା ଦରକାର ।

କେ୍ୟାତ—ଅଙ୍କ ଦ୍ୱାମାଗ ମୁଁ ସେଇକଥା ତ ଭାବୁଚି ରାଧା—ଘର ଛାଡ଼ି ମତେ ବୋଇଟିକ ହେଲେ ଯିବାକୁ ହବ । ମୁଁ ଗଲେ ତୋ ମନରେ ଦୁଃଖ ହବ ନାହିଁ ତ ?

ରାଧା—ନା, ତୁମେ ଯାଅ । ମୁଁ ଦୁଃଖ କରିବି କାହିଁକି ? ଟଙ୍କା ରୋଜଗାର କରି ନିଜ ଗୋଡ଼ରେ ଛିଡ଼ା ହୋଇ ପାରିଲେ ସେଥିରେ ମୁଁ ଖୁସି ହେବି । ତୁମେ ଯାଅ, ମୋ ପାଇଁ ଭାବିବାର ଦରକାର ନାହିଁ ।

କେ୍ୟାତ—ତୋର୍ ପାଇଁ ତ ମୋର ଯେତେ ଦୁର୍ଭାବନା । ମୁଁ ଘରେ ଥାଉଁ ଥାଉଁ ତୋ ଉପରେ ଏତେ ଜୁଲମ ହେଉ ଯାଉଚି— ମୁଁ ଯଦି ବିଦେଶକୁ ଯାଏ, ତା' ହେଲେ ତତେ ଅଙ୍କ ଘରେ ରଖେଇ ଦେବେ ନାହିଁ । ତୋ ଜୀବନକୁ ଜଳି ବଳି କରି ମୁଁ କଣ ସୁଖ ପାଇବି ରାଧା ?

ରାଧା—ମୋ ପାଇଁ ତୁମେ କଣ ତୁମ ବାପାଙ୍କ ମନରେ କଷ୍ଟ ଦବ ? ବୁଢ଼ା ଲୋକ ସେ, ତାଙ୍କ ଇଚ୍ଛା ବିରୁଦ୍ଧରେ କାମ କରିବା ତୁମ ପକ୍ଷରେ ଖାଲି ଅନ୍ୟାୟ ନୁହେଁ, ମହାପାପ ।

କେ୍ୟାତ—ରାଧା ତୁ ମତେ ଭୁଲ ବୁଝୁଚୁ ।

ରାଧା—ତୁମେ ମତେ ଭାରି ଭଲ ପାଅ—ସେ କଥା ଆଜି ମୁହଁ ଫିଟେଇ କହିବାକୁ ହବ ନାହିଁ । ସେମିତି ଭଲ ପାଅ ବୋଲି ଅନାଥା ଝିଅଟିକୁ ନିଜ ଘରେ ଆଶ୍ରୟ ଦେଇଚ । ବାଟର ଭିକାରଣୀ ହୋଇ ଥିବା ମୁଁ ଆଜି ତୋଟାଏ ନାମଜାଦା ଘରର ବୋହୂ ।

କେ୍ୟାଟ—ତୁ ଆମ ଘରର ଲକ୍ଷ୍ମୀ । ତୋ ଭଲ ସ୍ତ୍ରୀର ଦୁଃଖ ଦେଖିଲେ ମୁଁ ସହି ପାରେନା ରାଧା ! ବେଳେ ବେଳେ ବାପା ବୋଉଙ୍କ ଉପରେ ମନଟା ମୋର ବିଦ୍ରୋହୀ ହେଇ ଉଠେ, ହେଲେ ମୁଁ କିଛି କହିପାରେ ନା—( ରାଧାକୁ ଆଦର କରି ) ସତରେ ରାଧା ! ମୁଁ ଚାଲିଗଲେ ତୋର କଷ୍ଟ ହବନି ତ ?

ରାଧା—ନା, ତୁମେ ତ ସବୁ ଦିନକୁ ଘର ଛାଡ଼ି ଯାଉନ ! ଯାଉଚ, ଚାକିରି କରିବାକୁ, ରୋଜଗାର କରିବାକୁ—ସେଥିରେ ମୋର ଦୁଃଖ କଷ୍ଟର କଥା କଣ ଅଛି ?

( ଅନ୍ତରାଳରୁ ପିଅରମଣିଙ୍କର ପାଟି ଶୁଭିଲା )

କେ୍ୟାଟ—ହେଇଟି, ବୋଉ ଆସୁଛି ! ମୁଁ ଯାଏଁ— । ଅଜ୍ଞ ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରି ୨।୩ ଦିନ ଭିତରେ ଗାଁ ଛାଡ଼ି ଚାଲିଯିବି । ଘରୁ ଗୋଡ଼ କାଢ଼ି ବାହାରକୁ ନ ଗଲେ ଗାଁରେ ଚପିବସି କିଛି ହେଇପାରିବ ନାହିଁ । ( କେଫାର୍-ଗୃହୀ ପ୍ରସ୍ଥାନ )

ରାଧା—( ହସ ହସ ମୁହଁରେ ସେହି ଆଡ଼େ ଚାହିଁଛି ପିଅରମଣି ପ୍ରବେଶ କଲେ )

ପିଅର—ଅଲେ ବୋହୂ, ଝିଅଏ ସଣୁଣା ଗଣୁଣା ଶିଖ—ପୁଅଟା ସେତେବେଳୁ ଘର ଭିତରେ ପଶିଛି, ତା ସାଙ୍ଗରେ କଥାବାର୍ତ୍ତା ହସ ଖୁସି ଚାଲିଚି—ଏଇ ଦିନବେଳଟାରେ ? ଲାଜ ସରମ କିଛି ନାହିଁ ଝିଅଏ ? ଇଜ୍ଜତ ମହତ ନାହିଁ ? ଘର ଭଗାରି କଣ କହିବେ ? କୁଳ ଧର୍ମ କଣ ଉଠିଗଲାଣି କି ତୋ ଲେଖାରେ ? କଣ ଏତେ ଗପ ପଡ଼ିଥିଲା ଶୁଣେ ?

ରାଧା—ନାହିଁ ବୋଉ ! ସିଏ ଚାକିରି କରି ଯିବେ ବୋଲି କହୁଥିଲେ ।

ପିଅର—ସତେ ! ଶୂକର ଘର ଯିବ ? ଚୋଉ ସାଇଜଙ୍କୁ ଯିବ ମ ? ମୋ ଆଗରେ ମିଛ ? ବୁଝିଲୁ ବୋହୂ ! ମୁହଁ ଦେଖି ମୁଁ ସମସ୍ତିଙ୍କର ମନ କଥା ଜାଣିପାରେ । ଭଗବାନ୍ ମତେ ବୁଦ୍ଧି ଟିକକ ଦେଇଚନ୍ତି । ସତ କହିଲୁ, ତୁ ମୋ ନାଁରେ ସତ ମିଛ କରି ରଗୁଲ୍ କରୁ ନ ଥିଲୁ ?

ରାଧା—ଛି, ବୋଉ ! ତୁମେ ଏଗୁଡ଼ାକ କଣ କହୁଚ ? ମୁଁ ଯେବେ— ତା'ହେଲେ ମତେ ଧର୍ମ ସହିବ ନାହିଁ ।

ପିଅର—ସତେକି ମ ? ଧର୍ମ ଅଧର୍ମ ଜ୍ଞାନ ହେଲାଣି ଏବେ ? ମୁଁ ମନେ କରିଥିଲି ଜାଅଁଣୀ ଘର ଝିଅର ଧରମକୁ ଭୟ ନାହିଁ । ହଉ ଲୋ ମା ! ତୋ ଧର୍ମ ତୋଠି—ତୁ ଯେବେ ମୋ ପଛରେ ଭଲ ମନ୍ଦ କହୁ ପାଉଥିବୁ, ଯିଏ ଦିନ ରାତି କହୁଚ ସେଇ ବୁଝିବ । ମୋର ସେଇ ସାକ୍ଷୀ, ମିଛ ସତର ସାକ୍ଷୀ ଭଗବାନ ଅଛନ୍ତି ।

ଘନ—( ଗଳା ଖଙ୍କାରି ପଶି ଆସିଲେ ) କଣ କି ଜଉବୋଉ ! ଭଗବାନ କଣ କଲେ କି ତୁମର ?

ପିଅର—ନାହିଁ ତୁମ ବୋହୂରାଣୀଙ୍କ ଗୁଣ ଶୁଣ । କେମିତିକା ମୁହେଁ ମୁହେଁ ଜବାବ ଦଉଚି । ଅଲୋ ଶଶୁରଠା ଛୁଡ଼ା ହେଇଚି ମ ! ଭଲକରି ଓଢ଼ଣାଟା ଟାଣିଦେ, ମାନଥାନ ଟିକିଏ ରଖ ।

ଘନ—ଥାଉ ଥାଉ । ପିଲାଟାକୁ ଏତେ ଶାସନ କଲେ ଚଳିବ ନାହିଁ । ତୁମର ଏ ଗରମ ଶାସନଟାକୁ ଟିକେ ନରମ କରିଦିଅ । ଝିଅବେଳେ ବୋହୂଟା ଉପରେ ହାଉ ହାଉ ହେଉଥିଲେ ଲୋକେ ହସିବେ । ଅଲୋ ମା ! ଶାଶୁ ଚୋର ଭାର ଜାଣେ । ତା ମହତ ଜଗି ନ ଚଳିଲେ… ..

**ପିଅର**—ଜୀ, ତୁମର ଯୋଜ ଗଣ୍ଡିମୁଣ୍ଡ କଥା । ମୁଁ ତାହାର କଣ ଖାଇପାଉଛି କି ? ମତେ ଖାଲିଟା ଜଗିରଖି ଚଳିବ ? ବୋହୂ, ତୁମର, ତୁମେ ତାକୁ ମୁଣ୍ଡରେ ବସେଇଛ । ତୁମରି ଜଗିରଖି ଚଳୁ ।

**ଘନ**—ଘରର ବୋହୂ, ମୁଣ୍ଡରେ ବସେଇବା ନାହିଁ କଣ ଦାଣ୍ଡରେ ବସେଇବ ? ଯୋଜ ବୁଦ୍ଧି ତ ତୁମର । ତୁମେ ତ ମଣିଷ ନୁହଁ, ଗୋଟେ ଗୋରୁ ।

**ପିଅର**—ମୁଁ ତ ଗୋରୁ, ତୁମର ଯାହା ଖୁସି କର । ହେଲେ ଦାଣ୍ଡରେ ଘାଟରେ ଯେମିତି ନାଁ ନ ପଡ଼େ ମୁଁ ସେଇକଥା କହୁଛି ।

**ଘନ**—ବୋହୂ, ତୁ ପିଲା ମଣିଷ । ଘରକରଣା କିଛି ଜାଣି ନାହୁଁ, ବୁଝି ସମୁଝି ଖର୍ଚ୍ଚ କରିବୁ । ଖିଆପିଠି ଖାଇ ଭଲଟି ସାଇତି ଦବୁ । ପଇସାଟିଏ ଯେମିତି ଅଯଥାରେ ନଷ୍ଟ ନ ହୁଏ । ଜଣ୍ଡବୋଉ ! ବୋହୂକୁ ଏସବୁ କାଇଦା କଠଉଣା ଶିଖେଇ ଦବଟି ! ଏତିକିବେଳୁ ସଜାଡ଼ି ନ ହେଲେ ଘରକରଣା କଲାବେଳକୁ ନଙ୍ଗଳା ହେଇ ଝାଉଁ ଝୁଙ୍ଗୁ ହେଇ ବସିଥିବ ।

**ପିଅର**—ମୋ କଥା କଣ ଶୁଣୁଛ ସେ ହାତଗୋଡ଼ ଖାଉଛି ? ଓଲଟି ଏମିତି ଜବାବ ଦଉଛି ଯେ, ଯେ ଶୁଣିବ ତା ଦେହରେ ଚୁଳୁଟରେ ଲାଗିଯିବ । ଏ ଆଉ କିଛି ନୁହେଁ, ସାଇରୁ ଯୋଉଁ ମାଇପେ ଆସୁଛନ୍ତି ତାଙ୍କରି ଶିକ୍ଷା ।

**ଘନ**—ଆହା ହା, ପରଶିକ୍ଷାରେ ପଡ଼ିବୁ ନାହିଁ ମା । ପର ଘର ଭାଙ୍ଗିଦେବେ, ତୋ ଲାଗି ଦେବେ ନାହିଁ । ପର ବୁଦ୍ଧିରେ ଚଳନ୍ତେଙ୍କ ପର ରଜା ହେବାକୁ ଗୁଡ଼ିଲେ । ସେଇଥିପାଇଁ କଥା ଅଛି, ନିଜ ବୁଦ୍ଧିରେ ଘାସ କାଟିବ ପଛେ ପର ବୁଦ୍ଧିରେ ଘୋଡ଼ା ଚଢ଼ିବ ନାହିଁ । ମୁଁ ସବୁ ସହିବା ମା···ହେଲେ ଜଳବପଣ, ଟଙ୍କା

ଲକ୍ଷଣ ପଇସାଟି ଏ ବନବଂସ୍ୟ ହେଲେ ମୋ ଦେହ ସହିବ ନାହିଁ । ହଉ ହଉ ! ତୁମେ ଥାସ ଜନ୍ତବୋଉ ! ମୋର ଔଷଧ ଖାଇବା ବେଳ ଗଡ଼ି ଯାଉଛ ।

( ଫିଅରମଣିକୁ ନେଇ ଧନ ଚାଲିଗଲେ । ରାଧା କାମରେ ଲାଗିଲେ )

---

## ଚତୁର୍ଥ ଦୃଶ୍ୟ

( ଛଥାବାଡ଼ି ଧରୁଁ କରୁଁ ପ୍ରବେଶ କଲେ ଜ୍ୟୋତ୍ସ୍ନା ଓ ପ୍ରାଣନାଥ )

ପ୍ରାଣ—କଥାରେ ଅଛି, ଯାବତ ଶାଶୁ ଡାହାଣିଙ୍କ ବଳେ । ଏ କଣ ଅଜ ମିଛ ?

ଜ୍ୟୋତ୍ସ—ସେଇ କଥା ତ ଭାବୁଚ ନାଥ ! ମୁଁ ଯେବେ ଘର ଛାଡ଼ି ସହରକୁ ଯିବି, ବୋଉ ତାକୁ ଅଉ ରଖିଥୋଇ ଦବ ନାହିଁ । ମୁଁ ଥାଉଁ ଥାଉଁ ଯେତେବେଳେ, ପ୍ରତିଦିନ କୁରୁକ୍ଷେତ୍ର ଲାଗୁଛି.... .

ପ୍ରାଣ—ତୁମେ କିଛି ଚିନ୍ତା କରନାହିଁ । ନୂଆବୋହୂର କିଛି ହବ ନାହିଁ । ତୁମେ ତାକୁ କହିଦେଇ ଯାଅ, ସେ ବୋଉ କଥାରେ ପାଟି ଫିଟେଇବ ନାହିଁ । ପଦକୁ ପଦ ଜବାବ ଦେଲେ ସିନା କୁରୁକ୍ଷେତ୍ର ଲାଗିବ ? ସେ ଯେବେ ଚୁପ୍‌ଚାପ୍ ହୋଇ ରହେ, ଗୋଟେ ହାତରେ କେମିତି ତାଳି ବାଜିବ ଦେଖିବା ?

ଜ୍ୟୋତ୍ସ—ଘରର ହାଲ୍‌ଚାଲ୍, ଭଲମନ୍ଦ ବୋଉ କଥାରେ ପାଟି ଫିଟେଇବ ଏମିତି ଝିଅ ରାଧା ନୁହେଁ । ବୋଉ ଉପରେ ପଡ଼ି କଳି ଅରମ୍ଭ କରେ । ସବୁକଥା ଅଖିରେ ଦେଖୁଚ, ହେଲେ ପ୍ରତିବାଦ କରିବାର ଉପାୟ ନାହିଁ । ମୁଁ ଯେବେ ପଦେ କହିବି, ସାଇସାହି ହୁଟହାଟ ହୋଇଯିବ । ସମସ୍ତେ କହିବେ ଭାରିଯା ଗୁଆଗି ।

ପ୍ରାଣ—କିଛି ପରେବ ନାହିଁ ଜଗଭୂଇ ! ତୁମେ ଗୃଲ ମୋ ସାଙ୍ଗରେ । ଆଜକାଲି ସମସ୍ତରେ ଲୋକ ସବୁଠି ଦରକାର । ଆମକୁ ଯୋଉଠି ହେଲେ ଗୃକର ମିଳିବ । ତେଣିକି ଆମେ ସୁବିଧା ଦେଖି ନୂଆବୋହୂକୁ ପାଖକୁ ନେଇଯିବା । ଏଠୁ ଗଲେ ଏମାନଙ୍କ ରାଗ ମରିଯିବ ଯେ ।

ଜ୍ୟୋତି—ସେ କଥା କହନା ନାଥ ! ବୋଉ ଯଦି ଏ କଥା ଶୁଣିବ, ତାହାହେଲେ ସର୍ବନାଶ । ସବୁବେଳେ ତାକୁ ଖୁଣ୍ଟା ଦେଇ ଦେଇ ମାରିବ ।

ପ୍ରାଣ—ତରିଲେ ଚଳିବ ନାହିଁ ଭାଇ ! ହାତଧରି ପରିଛିଅଛୁ ଯେତେବେଳେ ବାହା ହେଇଚ, ତା'ର ଭଲ ମନ୍ଦ, ସୁଖ ସୁବିଧା ସକାଶେ ତୁମେ ଦାୟୀ । ନୂଆବୋହୂ ଭାରି ଭଲ ମଣିଷ । ତା ମନରେ କଷ୍ଟ ଦେଇ ତୁନିହେଇ ବସିବା ଠିକ୍ ନୁହେଁ । ଏଇନେ କାମ ଦାମ ନକରି ବେରୋଜଗାରୀ ହେଇ ଘରେ ବସିଚ ବୋଲି ସିନା ସମସ୍ତେ ଦାଉ ସାଧୁଚନ୍ତି । ପଛେ ପୁଣି ମଜା ଦେଖିବେ ଯେ—

ସନେଇ—(ପ୍ରବେଶ କରି) କଣ କରେ ନାଥିଅ ?

ପ୍ରାଣ—ନାହିଁ ଭାଇ, ଦୁଃଖ ସୁଖ ପଡ଼ିଚ ।

ଜ୍ୟୋତି—ହଉ ତୁ ଥା ନାଥ । ଦିନେ ଦିଦିନ ଭିତରେ ଯୋଗାଡ଼ପତ୍ର କରି ଯିବାର କଥା ।

ପ୍ରାଣ—ହିଁ ତୁମେ ଯାଅ ! ଭାବିବାର କିଛି ଦରକାର ନାହିଁ । ସବୁ ଆପେ ଆପେ ଠିକ୍ ହେଇଯିବ । ଦିନ ବାର ଘରି ଅନୁକୂଳ କରିବାର କିଛି ଦରକାର ନାହିଁ । ( ଜ୍ୟୋତି ଗୃଲିଗଲ )

ସନେଇ—ପର ଦୁଃଖରେ ଭାରି ଦୁଃଖି ହେଲୁଣି ତ ଏଥର ? କୁଆଡ଼େ ଅନୁକୂଳ କରିବୁ କରେ ?

ପ୍ରାଣ—ନାଇଁ ସନେଇ, ଅଜ୍ଜା ଭାଇ ମହାରଗ କାଳରେ ଘରେ ବସିଲେତ କର୍ମ ଦୁଃଖ ଯିବନାଇଁ ? ଭାବୁଚି ସ୍ୱାମୀ ହେଇ କୁଆଡ଼େ ଗୃହର ବାଇର ଖୋଜବାକୁ ଯିବା ।

ସନେଇ—ନାଇଁମ, ପରହିଁଆ କଥା କଣ ପଢ଼ିଥିଲ କି ? ଯସିଲା ବେଳେ ମୋ କାନରେ ନୂଆବୋହୂ କଥା ବାଜଉ । ଜନ୍ତ ସାଙ୍ଗରେ ଧରମଭାଇ ବସିଲଣି କି ଏବେ ?

ପ୍ରାଣ—ଠୋର ଯୋଉ କଥା ସନେଇ ! ହଇରେ, ଭାଇ କଣ ଅଜ୍ଜା ନୁଅ ବଯୁଉ । ଭାଉଜ ଅସିବା ଅଗରୁ ପଞ୍ଚ ଅମର...

ସନେଇ—ହିଁ ପ୍ରାଣନାଥ, ମୁଁ ସବୁ, ସବୁ ଜାଣିଉ । ଗଣ୍ଠିବନ୍ଧର ହିଁଅ ସବୁଦନେ ଭଲ, ସେଥିରେ ପୁଣି ଗ୍ଧା । ବାପ ତାର ବନ୍ଧୁ ଥାଉଁ ଥାଉଁ ତୁମେ ଦୁଇଜଣଯାକ ଯେମିତ ସେଠିକି ଯିବା ଅସିବା କରଥିଲ, ମୁଁ ମନେ କରଥିଲି ଗଜଜେମ ବୋଧହୁଏ ତୁମର ଗଳାରେ ବରଣମାଳା ଦବ । ହେଲେ କେଂାଉ ବଡ଼ଘରର ଝିଅ । କର୍ମ ତାର ସଲଖ । ଯୋଗ ଏମିତ ପଡ଼ିଲା ଯେ ସେଇ ଗ୍ଧାକୁ ଫେର୍ ନୂଆବୋହୂ ଡାକିବାକୁ ପଡ଼ିଲା ଉଚେ ।

ପ୍ରାଣ—ଧେତ୍, ଭାର ଖରାପ ଲୋକଟା ତୁ । ନାଥକୁ ଅଜ୍ଜାପାଢେ ଡାକି ପାରଲୁ ନାଇଁ ?

ସନେଇ—ଉଚ୍ଚିତ ହୋ ନାଥ—ଖୁବ୍ ଉଚ୍ଚିତ । ସେଇତ ପାଇଁ ଏଇକ୍ଷଣି ନୂଆବୋହୂ ନୂଆବୋହୂ ବୋଲି ସୁଅଗ ବଳେଇ ପଡ଼ୁଉ ? ହଇରେ, ଅଜ୍ଜ ସେଠି ଧାରଣା ଦେଲେ କଣ ହବ ? କେଂାଉରେ ଯୋଉ ସାବଉ ମା ସେ ତ ଜଟିଳା ବୁଢ଼ୀଠୁଁ ବଳେ । ତାକୁ ଫାଙ୍କି ଦେଇ ଗ୍ଧା ସାଙ୍ଗରେ......

ପ୍ରାଣ—ଯା, ଯା, ତୁମେମାନେ ସବୁ ଭଲଲୋକ ନୁହଁ । ପର ଝିଅବୋହୂଙ୍କ ନାଁରେ ଏମିତି କଥା କହନ୍ତି ନାହିଁ । ଗୃହକର ଘର କେମିତି ଦପଇସା ଅଣିବା—ଅମର ସେଇ କଥା ପଢ଼ୁଥିଲି ।

ସନେଇ—ବାଃ, 'ଖୁବ୍ ଘର କଥା ବୁଝି ଦେଖିଲଣି ତ ? ହଁ ଭାଇ ! ଦହିଁକି ଦଣ୍ଡେ ଗୃହସ୍ଥଙ୍କର ଗୋଟିଏ ଯାଗାରେ ଖଣ୍ଡିଏ ବସା ବାନ୍ଧ । ସେଇଠୁ ନୂଆବୋହୂକୁ ପାଖକୁ ନେଇଯିବ ; ତାହେଲେ ଅଜ କଟିଲା ବୁଢ଼ୀର ଭୟ ରହିବନି । ହଁ କେଉଁଠିକି ଯିବାର ଠିକ୍ ହେଉଛି ଶୁଣେ ?

ପ୍ରାଣ—ଖଡ଼ଗପୁର କି କଲିକତା ଚାଲିଯିବା । ମିଛ ମିଛ ଗୃହସ୍ଥ ଯୋଗାଡ଼ି ମିଳିବ । ଏକୁଟିଆ ମଣିଷ ଅମର, ଏବେ ଲଗା ନା ପଢ଼ା ?

ସନେଇ—ହଁ, କିଛି ନହେଲେ ଦେଶ ବିଦେଶ ବୁଲି ଆସ । ପର ଧନରେ ମଙ୍ଗଳବାର କରିବା କଥା । ତୋର ଏବେ ହାତରୁ ଗୁସ୍ତାଖର୍ଚ୍ଚ ପଡ଼ୁଛି । ହେଲେ ନାଥିଅ ! ଘନଶ୍ୟାମ ବୁଢ଼ା ଯେମିତି କୃପଣ ସେ ଯେବେ ଏ କଥା ଶୁଣିବ ତୋର ପିଠି ରହିବ ନାହିଁ । ହଇରେ, କେଁଆଣିକି ଏଠି ଅଜ ଗୃହର ମିତ୍ରନାହିଁ ଯେ ତୁ ତାକୁ କଲିକତା ନେଇ ବାହାରିବୁ ? ତାର ତୋର କଥାରେ ଅଭାବ ଯେ—

ପ୍ରାଣ—ହେଇ କୃପଣ ବୋଲି ତ ପୁଅର ଯିବା କଥା । ସେ ନିଜ ଗୋଡ଼ରେ ଛିଡ଼ା ହେବ । ବାପର ସମ୍ପତ୍ତିକୁ ଅନେଇବ ନାହିଁ । ଧାନ ଚାଉଳ ବିକି ଖଦି କର ରେଶମ ବେପାର କରିବାକୁ କଲିବାଳ ପସନ୍ଦ କରେନା ।

ଧନେଇ—ଦେଖ ! ଜହରର ଲାଙ୍ଗୁଡ଼ ଧର, ତୁମେ ବୋଉ ବୈତରଣୀ ପାରି ହଉଚ । କାମିକା ଲୋକ କାମରେ ଯାଅ । ମୁଁ ଦୋକାନ ଯାଉ ଯାଉଚି । ( ଉଭୟଙ୍କର ପ୍ରସ୍ଥାନ )

---

## ପଞ୍ଚମ ଦୃଶ୍ୟ

( ସୁଧାଂଶୁର ଘର । ଶ୍ରୀଯୁକ୍ତ ଅମଳ ଚୌଧୁରୀ ଓ ସୁଧାଂଶୁ କଥାବାର୍ତ୍ତା କରୁ କରୁ ପ୍ରବେଶ କଲେ )

ଚୌଧୁରୀ—ଯୋଉ ବ୍ୟବସାୟ ସୂତ୍ରରେ ତୁମର ଦରକାର ଟଙ୍କା- ସେଇ ବ୍ୟବସାୟ ସୂତ୍ରରେ ମୋର ଦରକାର ସୁନାମ । ମୁଁ ତୁମଙ୍କୁ ଅଜସ୍ର ଟଙ୍କା ଦେବି, ସୁଧାଂଶୁ ! ତୁମେ Scoundrel ଜହରଟାକୁ ବାଟରୁ ହଟାଇ ଦିଅ ।

ସୁଧାଂଶୁ—ଏସବୁ ଚିନ୍ତା ନାହିଁ ମିଷ୍ଟର ଚୌଧୁରୀ, ମୁଁ ତାର ବ୍ୟବସ୍ଥା କରିବି ।

ଚୌଧୁରୀ—ତୁମେ ମନେ କଥା ଦେଉଚ, ଆଉ ତୁମ କଥା ଉପରେ ମୋର ଯଥେଷ୍ଟ ଭରସା ଅଛି । ଜହର ଆଜ ତାର ପ୍ରେସର ଉଚ୍ଛେଦ କରିବା ପାଇଁ ମୋର ଯେବେ ବ୍ୟାଙ୍କର ସମସ୍ତ ଟଙ୍କା ଶେଷ ହୋଇଯାଏ ତାହେଲେ ବି ମୁଁ ପଛେଇବି ନାହିଁ । ଲୋକଟା ଏଭଳି ଦୁର୍ଦ୍ଦାନ୍ତ ଯେ, Societyରେ ମୋର ଦୁଇପଇସାର ଦାମ ବୁଝି ମଧ୍ୟ ମନେ ଚରମ ଅପମାନ ଦେଇଚି; ମୁଁ ତାର ସର୍ବନାଶ କରିବାକୁ ଚାହେଁ ।

ସୁଧାଂଶୁ—ଧୀରେ ମିଷ୍ଟର ଚୌଧୁରୀ ! ଏତେଟା ଉତ୍ତେଜିତ ହେଲ- ମନ୍ଦୁଲେ ଚଳିବ ନାହିଁ । ଲୋକଟାକୁ ଜବତ କରିବା ଯେତେଟା ସହଜ ବୋଲି ମନେ କରୁଚନ୍ତି, ପ୍ରକୃତରେ ତା ନୁହେଁ । ଜହର ଆଜି ଅପଣମାନଙ୍କ ବିରୁଦ୍ଧରେ ଦେଶମୟ ବିପ୍ଳବ

ସୃଷ୍ଟି କରନ୍ତି । ଦେଶର ପ୍ରତ୍ୟେକଙ୍କ କାନରେ ଜହର ଢାଳି ଦେଉଛି ସତର୍କତାର ବାଣୀ । ପଛରେ ତାର ଅଛି ଏକ ଛତ୍ରଟ ଜନତା ।

ଚୌଧୁରୀ—ଟଙ୍କାର ପ୍ରଲୋଭନ ଦେଖାଇ ଗୋଟାଏ ଜାତିକୁ ବଶ କରାଯାଇ ପାରେ ; ମାତ୍ର ଗୋଟାଏ ସାମ୍ରାଜ୍ୟ ଦେଇ ମଧ୍ୟ ଜହରକୁ ବଶ କରାଯାଇ ପାରେନା । ସେ ଭୀଷଣ, ଦୁର୍ଦ୍ଧାନ୍ତ, ଭୟଙ୍କର, ସାଂଘାତିକ !

ସୁଧାଂଶୁ—ହିଂସ୍ରଜନ୍ତୁଙ୍କୁ ଯେମିତି ଶିକାରର ପ୍ରଲୋଭନ ଦେଖାଇ ଜାଲରେ ଧରାଯାଏ, ସେହି ଦୁର୍ଦ୍ଧାନ୍ତ ଜନ୍ତୁଟିକୁ ମଧ୍ୟ ଶିକାରର ପ୍ରଲୋଭନ ଦେଖାଇବାକୁ ହେବ । ମାତ୍ର ସେ ଶିକାର ଆପଣଙ୍କର ବୃଦ୍ଧି ରାଶି ଟଙ୍କା ନୁହେଁ । ମିଲ୍‌ର ସ୍ତୂପୀକୃତ ଐଶ୍ୱର୍ଯ୍ୟ ନୁହେଁ ।

ଚୌଧୁରୀ—ଅର୍ଥାତ— ?

ସୁଧାଂଶୁ—ସାଧାରଣ, ଅତି ସାଧାରଣ ଜିନିଷ । ପୃଥିବୀର ଅତି ମାମୁଲି ବସ୍ତୁ । ତାର ପ୍ରଲୋଭନରେ ଜହର ଅତି ସହଜରେ ଠକିଯିବ । ମୁଁ ଯୋଉ Plan କରୁଛି ପରେ ଆପଣଙ୍କୁ ଜଣାଇବି ।

ଚୌଧୁରୀ—ଧନ୍ୟବାଦ । ମୁଁ ସେ ଦିନର ଅପେକ୍ଷା କରୁଛି । କିନ୍ତୁ ମୁଁ କଣ ଭାବୁଛି ଜାଣ ସୁଧାଂଶୁ ? ତାର ପ୍ରେସର କମ୍ପୋଜିଟର୍‌ମାନଙ୍କୁ ହାତକରି ପାରିଲେ—

ସୁଧାଂଶୁ—ତା ହେଲେହିଁ ସର୍ବନାଶ । ଆପଣ କେବଳ ତା'ର ଗତିବିଧି ଲକ୍ଷ୍ୟ କରନ୍ତୁ । ସୁଧାଞ୍ଜି ହେଲେ ମଧ୍ୟ ସିଏ ଯେବେ ଜାଣିପାରେ ତାକୁ ଫାନ୍ଦରେ ପକାଇବାକୁ ଶିକାରର ଲୋଭ ଦେଖାଯାଉଛି, ସେ ଜନ୍ତୁ ପାଖକୁ ଆସିବ ନାହିଁ ବରଂ ଲୁଚି ବସିଥିବା ଶିକାରୀକୁ ଜଖମ କରିବ ।

ଚୌଧୁରୀ—ତୁମେ ଠିକ୍ କହୁଛ ସୁଧାଂଶୁ । ମୋର ହୃଦ୍‌ଦୃଷ୍ଟିର ନିତାନ୍ତ ଅଭାବ ।

ସୁଧାଂଶୁ—ଅପଣ ଯାନ୍ତୁ ଜହର ସାଙ୍ଗରେ ଗୋଟାଏ ସାଲିସ କରିବାର ଚେଷ୍ଟା କରିବେ । ମୁଁ ଯାଉଛି ତା'ର ସର୍ବନାଶ କରିବାର ଉଦ୍‌ଯୋଗ ପର୍ବ ସୃଷ୍ଟି କରିବାକୁ ।

ଚୌଧୁରୀ—ସେ କଣ ? ପୁଣି ଥରେ ଅପମାନ ବରଣ କରିବାକୁ ଯିବି ? —ଦରବାରରେ ମୋର ପ୍ରତିପତ୍ତି ଜାଣି ସୁଦ୍ଧା, ଜଂଗଲସାମ୍ରାଜ୍ୟରେ ମୋର ଅଗାଧ କୌଶଳ ବୁଝି ସୁଦ୍ଧା, ଜହର ସେଦିନ ମତେ ଅତିମାମୁଲି ଲୋକଭଳି ଉପହାସକରି ତାଚ୍ଛଲ୍ୟ-ଭରା ଧମକ ଦେଇଛି । କୌଣସି ପ୍ରକାର ଅଭିଜାତ୍ୟକୁ ସେ ଭ୍ରୂକ୍ଷେପ କରେନା—କୌଣସି ପ୍ରକାର ପ୍ରଲୋଭନକୁ ସେ ଟାଣେର ରଖେନା । ତୁମେ ସେଠି ଥିଲେ ତୁମ ରକ୍ତ ମଧ୍ୟ ଗରମ ହୋଇଯାଇଥାନ୍ତା ।

ସୁଧାଂଶୁ—ତଥାପି ଅପଣଙ୍କୁ ସନ୍ଧି କରିବାକୁ ହେବ । ଅଜି ଅପଣଙ୍କର ସେଇ ପରାଜୟର ଅନ୍ତରାଳରେ ରହିବ ବିଜୟର ଶୁଭ-ସଙ୍କେତ । ଦିନ ଅସିବ, ଯୋଉଦିନ ଦେଶବାସୀଙ୍କ ଆଖିରେ ଜହର ନିଜ ନାମର ସାର୍ଥକତା କରିବ ଗୋଟାଏ କଦର୍ଯ୍ୟ କାପୁରୁଷର ଛାପାନେଇ । ଅସନ୍ତୁ ସମ୍ଭୁସାହେବ, ମୁଁ ଜହରକୁ ଅମନ୍ତ୍ରଣ କରିଛି । ସେଇ ଅମନ୍ତ୍ରଣ ହେବ ତାର ମରଣର ଅମନ୍ତ୍ରଣ ।

ଚୌଧୁରୀ—କିନ୍ତୁ ସୁଧାଂଶୁ ! ମୁଁ ସାଲିସ କଥାଟାର ଅର୍ଥ ଖୋଜି ପାଉନି । ବାସ୍ତବିକ ଜହର ସାଙ୍ଗରେ କୋଉ ହିସାବରେ ସନ୍ଧି ସମ୍ଭବ, ମୁଁ ତାର କିଛି କୂଳକିନାରା କରିପାରୁନି ।

ସୁଧାଂଶୁ—ସାଲିସ କରିବା ପାଇଁ ଅପଣଙ୍କୁ ଜହର ପାଖକୁ ଯିବାକୁ ହବ ନାହିଁ । ମିଲ ଶ୍ରମିକମାନଙ୍କର ଭରସା ବଢ଼ାଇ ଦିଅନ୍ତୁ । ଅପଣଙ୍କର ବ୍ୟବସାୟ ମୋଟକୁ କୋହଳ କରିଦେଇ କିଛିଦିନ ଜଣେ ତ୍ୟାଗବୀର ନେତାର ଅଭିନୟ କରନ୍ତୁ । ଦେଖିବେ, ଦୁର୍ଦ୍ଧାନ୍ତ ଜହର ଏକା ନୁହେଁ, ସାରା ଦେଶ ଅପଣଙ୍କ ପାଦତଳେ ମୁଣ୍ଡ ନୋଇଁବ ।

ଚୌଧୁରୀ—ଚମତ୍କାର ସୁଧାଂଶୁ ! ସୁନ୍ଦର ତୁମର କଳ୍ପନା ! ପ୍ରାଇଭେଟ ସେକ୍ରେଟାରୀ ଭାବରେ ତୁମକୁ ପାଇ ମୁଁ ଧନ୍ୟ ହେଲିଣ ।

ସୁଧାଂଶୁ—ଅସନ୍ତୁ ମିଷ୍ଟର ଚୌଧୁରୀ ! ଟେଲିଫୋନ ସାହାଯ୍ୟରେ ମୁଁ ଅପଣଙ୍କୁ ପ୍ରତିଦିନର ସମ୍ବାଦ ଦେବି । ନମସ୍କାର ।

ଚୌଧୁରୀ—Thanks (କିଛି ସମୟ ପଦଚାରଣ କଲାପରେ ଚିନ୍ତାଭାରାକ୍ରାନ୍ତ ... ବସ୍ଥାରେ ଦ୍ରୁତଗତି ଦଳରେ ପ୍ରସ୍ଥାନ କଲେ )

ସୁଧାଂଶୁ—ଛାୟା !

ଛାୟା—( ଭିତରୁ ) ଯାଇ ! ( ଅସିଲା ) ।

ସୁଧାଂଶୁ—କଣ କରୁଥିଲୁ ? କି ବହି ହେଇଟା ?

ଛାୟା—ଜହର ।

ସୁଧାଂଶୁ—ଜହର ! ଘରେ, ବାହାରେ, ପ୍ରେସରେ, ବୁକ୍ ଷ୍ଟଲରେ, ସ୍କୁଲରେ, କଲେଜରେ ସବୁଠି ଖାଲି ଜହର ! ଜହର ପୂର ବହିଗଲା ସବୁଟି ।

ଛାୟା—ଚମତ୍କାର ବହି ଖଣ୍ଡିଏ ଭାଇ ! ଆଜିକାଲି ଦେଶର ପରିସ୍ଥିତି ନେଇ ଏତେ ସୁଗୋଛିଆ ହୋଇଛି, ପଢ଼ିଲେ ତୁମେ ମୁଗ୍ଧ ହବ । ଗୋଟାଏ ବର୍ଷ ଭିତରେ ଏ ବହିର ଯେବେ ପଞ୍ଚମ ବା ସପ୍ତମ ସଂସ୍କରଣ ବାହାରେ ତା'ହେଲେ ଆଶ୍ଚର୍ଯ୍ୟ ହବାର ବା ଇର୍ଷା କରିବାର କିଛି ନାହିଁ ।

ସୁଧାଂଶୁ—ସତେ ନା କଣ ! ଜହରର ଭକ୍ତ ହୋଇ ପଡ଼ିଲୁଣି ତେବେ ?
କିନ୍ତୁ ହୁସିଆର ଥିବୁ ଛାୟା—ବେଶୀ ଭକ୍ତି ନ ହୁଏ ଯେମିତି ?

ଛାୟା—ତୁମେ ସବୁ କଥାର ଓଲଟା ଅର୍ଥ ଆବିଷ୍କାର କରିବସ ।
ସତରେ ଭାଇ, ଭାରି ଖରାପ ପ୍ରକୃତି ତମର । ସମୟ ପାଇଲେ
ବହିଖଣ୍ଡ ପଢ଼ି ଦେଖିବ—ଉପସଂହାର ହେଇଗଲା ! ପ୍ରତ୍ୟେକ
ଧାଡ଼ି ଯେମିତି ବିଦ୍ରୋହର ନିଆଁ ଜାଳି ଦେଇଛି ।

ସୁଧାଂଶୁ—ଠିକ୍ ପଡ଼, ମୁଁ ତାର ପରିଚୟ ପାଇଛି ଅନେକଦିନ
ଆଗରୁ । କିନ୍ତୁ ତୁ ଏବେ ମୋର ଗୋଟାଏ କଥା
ଜାଣିଲେ ଭାରି ଆଶ୍ଚର୍ଯ୍ୟ ହେବୁ ଛାୟା । ବହିଟିର ସ୍ୱନାମ-
ଧନ୍ୟ ଲେଖକ ନିଜେ ମୋ ସାଙ୍ଗରେ ଦେଖା କରିବାକୁ
ଆସୁଛନ୍ତି ।

ଛାୟା—ଜହରବାବୁ ଆସିବେ ? କେତେବେଳେ ?

ସୁଧାଂଶୁ—ବର୍ତ୍ତମାନ ! ମୁଁ କିନ୍ତୁ ବଡ଼ ମୁସ୍କିଲରେ ପଡ଼ିଛି ଛାୟା !
ରୌଟ୍ରସ୍ ମତେ ଡକେଇ ପଠେଇଛନ୍ତି ତାଙ୍କ ସାଙ୍ଗରେ
ଗୋଟାଏ ଜରୁରୀ ପରାମର୍ଶ କରିବାକୁ । ଡାକଟା
ଏକାବେଳକେ immediate. ମୁଁ ଫେରିଆସିବା ଆଗରୁ
ଜହରବାବୁ ଯେବେ ଆସନ୍ତି, ତାଙ୍କର ଦେଖାଶୁଣା କରିବୁ ।
ଏତେବଡ଼ ଲେଖକଙ୍କର ଯେମିତି ଅମର୍ଯ୍ୟାଦା ନ ହୁଏ !
ମୁଁ ଖୁବ୍ ଶୀଘ୍ର ଫେରି ଆସିବି ।

ଛାୟା—କିନ୍ତୁ ଭାଇ ! ଭଦ୍ରଲୋକଙ୍କୁ ଡାକିବାର କାରଣଟା ମତେ
କହିଯିବା ଉଚିତ ।

ସୁଧାଂଶୁ—ଯୋଉ ନୂଆ ପ୍ରେସ ଖୋଲିବାର କଳ୍ପନା ମୁଁ କରୁଛି,
ସେଇ ସମ୍ପର୍କରେ କେତେକ ଦରକାରୀ ଆଲୋଚନା ହେବ ।
ଘରଛାଡ଼ି ବାହାରକୁ ଯିବୁନି । ମୁଁ ଆସୁଛି ( ପ୍ରସ୍ଥାନ )

( ସୁଧାଂଶୁର ପ୍ରସ୍ଥାନ ପରେ ଛନ୍ଦା ହାତରେ ଚକ୍ରର ବହିଖଣ୍ଡିକ ଧରି ପଢ଼ାଗୁଣା କରୁ କରୁ ଗୀତ ଗାଇବାକୁ ଆରମ୍ଭ କଲା । ସେଇ ଗୀତକୁ ଗାଇ ଗାଇ ଅନ୍ତସଲଳକୁ ପ୍ରବେଶ କଲା ପ୍ରୀତି—ଛନ୍ଦାର ଜଣୈକ ବାନ୍ଧବୀ )

—ଗୀତ—

ଲଜ୍ଜରେ ମୁହଁ, ହୁଁ, ହୁଁ, ମନରେ ମୁହଁ, କରୁଛି ମୋର ଗୋପନେ ଗୋ
ନୂଆ ଚୋର ଜଣେ—ନୂଆ ଚୋର ଜଣେ ।
ନିରେଖି ଆସନ ପାରିଦେଲି ତାର ନିରେଖିଲା ହୃଦକୋଣେ ସପନେ
ନିରେଖିଲା ହୃଦକୋଣେ···ନୂଆ ଚୋର ଜଣେ
ତେବେ ନଜର ଚୋରି ଛନ୍ଦ ପ୍ରୀତି-ଡୋରି
ବାନ୍ଧିରଖି ବାହୁ ବେଢ଼ାରେ
(ତାରେ) ବାନ୍ଧିରଖି ବାହୁ ବେଢ଼ାରେ ।
ଚୋର କରୁଛି ମନ ଅଧୁର ଅଛି ଠାଣି ଲୁଟିବ ଯଉବନ ଧନେ
ନୂଆ ଚୋର ଜଣେ—ନୂଆ ଚୋର ଜଣେ ।
ପ୍ରୀତି ଡୋରିର ରେଶମୀ ଖିଅ (ଯେବେ) ଛୁଇଁବ ବାଙ୍କ ତା କଠିନ ଦେହ
ନୟନ ଲୁହ ଜଣାଇ ଛଳନୀ
ଢଳାଇ ଦେବ ଲପନେ—ଲପନେ
ଢଳାଇ ଦେବ ଲପନେ—
ଭାଙ୍ଗି ପଡ଼ିବ ତା କଠିନ ପଣ ଗୋ— ମଦନ ଫୁଲବାଣେ—
ନୂଆ ଚୋର ଜଣେ—ନୂଆ ଚୋର ଜଣେ—

ଛନ୍ଦା—( ଗୀତାନ୍ତେ ) ବହି ଖଣ୍ଡିକ ପଢ଼ିଛୁ ପ୍ରୀତି ?
ପ୍ରୀତି—ହୁଁ ପଢ଼ିଛି !
ଛନ୍ଦା—କେମିତି ଲାଗିଲା ?
ପ୍ରୀତି—ଭଲେ ?

ଛାୟା—ଭାରି ଚମତ୍କାର ।

ପ୍ରୀତି—ସତେ ?

ଛାୟା—ସତରେ ପ୍ରୀତି ! ଏକାବେଳକେ ଯୁଗର ନିଛକ ଛବି ।

ପ୍ରୀତି—ହୁଁ ପଢୁ ପଢୁ ଲେଖକଙ୍କର ପ୍ରତି ମନଟା ଆପେ ଆପେ ଟାଣି ହୋଇଯାଏ, ନା ?

ଛାୟା—ବାସ୍ତବିକ, ଜହର ବାବୁଙ୍କ ଲେଖା ଭାରି ସୁନ୍ଦର । ପ୍ରଶଂସା ନ କରି ରହି ହୁଏନା ।

ପ୍ରୀତି—ସତେ ନା କଣ ? ଜହର ବାବୁଙ୍କୁ ଦେଖିଚୁ ?

ଛାୟା—ନା ଦେଖିନି । ତେବେ ତାଙ୍କର ଆଜି ଆସିବାର କଥା । ଭାଇ କହିଯାଇଚନ୍ତି ଯଦି ସେ ଆସନ୍ତି, ବିଧିମତେ ତାଙ୍କର ଆଦର ଅଭ୍ୟର୍ଥନା କରିବାକୁ ।

ପ୍ରୀତି—ଓ, ତୁ ଏଇଥିପାଇଁ ମନ ଖୁସିରେ ଗୀତ ଗାଉଥିଲୁ ପରା ! ଟିକିଏ ସମ୍ଭାଳି ରହିବ । ତର ତର ହେଲେ ଫାଗ ବିଗିଡ଼ି ଯିବ । ହଁ, ସେ ଆସିଲେ କେମିତି ଅଭ୍ୟର୍ଥନା କରିବୁ ଶୁଣେ ?

ଛାୟା—ଚୁପ୍ ! ତୁ ଭାରି ଫାଜିଲ୍ ।

ପ୍ରୀତି—ଏଇ ଦେଖ୍ । ଜହର ବାବୁ ଆସିଲେ ଫୁଲ ହାରଟିଏ ଧରି ଛଳ ଛଳ ଆଖିରେ ଆରମ୍ଭ କରିବୁ, 'ହେ ମୋର ଅଦେଖା ପ୍ରଭୁ ! ସପନର ସାଥୀ ! ତୁମେ ଆସିଚ ? ମୋର ଲକ୍ଷଯୁଗର ସାଧନା ସଫଳ କରି ଆସିଚ, ଦେବତା ! ଆସ, ଆସ, ତୁମର ପଥ ଯେ ଚାହିଁ ବସିଚି ବିରହିଣୀ ଛାୟା !'

ଛାୟା—ଧେତ୍...

ପ୍ରୀତି—ସେଇଠୁ ଆଉ ଟିକିଏ କଅଁଳ କରି ଆରମ୍ଭ କରିବୁ । ଅଗୋ, ତୁମରି ଲେଖା କମାଣର ଗୋଳା ପରି ମୋର ବକ୍ଷ ଭେଦ-

କରବି । ଅସ ବିପ୍ଳବୀ ! ବିଜୟୀ ବୀର ! ତୁମେ ବିପ୍ଳବରେ ନିଅଁ ଜାଳ । ମୁଁ ଝଞ୍ଜା ହୋଇ ତୁମକୁ ସାହାଯ୍ୟ କରିବି । ତୁମେ ଧୂମକେତୁ ପରି ଓହ୍ଲାଇ ଅସ । ମୁଁ ବିଜୁଳି ପରି ଛୁଟିଯିବି—ଦୁହେଁ ମିଶି ବିପ୍ଳବର ମାଦଳ ବଜେଇବା—

ଛାୟା—ସତେ ? ତାପରେ—

ପ୍ରୀତି—ତା'ପରେ ଅଉ କଣ ? ମିଳନ···ତପସ୍ୟାର ଫଳ ।

ଛାୟା—ହୁଁ ।

ପ୍ରୀତି—କିନ୍ତୁ ମୋର ମିନତି ବା ଅନୁରୋଧ ବା ଅନୁଯୋଗ ଯେବେ ଫେଲ୍ କରେ ମାନେ ସପନପୁରୀର ରାଜପୁତ୍ର ଯେବେ ମୋ ହାତର ବରଣମାଳା ଗ୍ରହଣ ନ କରନ୍ତି, ତା'ହେଲେ ନିଜ ବେକରେ ଫୁଲହାରଟାକୁ ପକେଇ ରାଣୀ ଏଲିଜାବେଥଙ୍କପରି ଦର୍ପରେ ବୁକୁ ଫୁଲେଇ ଦରଜା ଅଡ଼େ ହାତ ଦେଖେଇ କହିବି Get out......Get out. ( ଏତିକିବେଳେ କହର ପଶି ଅସୁଥିଲେ—ଏମାନଙ୍କ କାଣ୍ଡ ଦେଖି ତାଙ୍କର କିଛି ପରିବର୍ତ୍ତନ ହେଲା ନାହିଁ )

କହର—Get out ?

ଛାୟା—Yes ! Mister—Get out—ମାନେ ସଦର ଦରଜା ଖୋଲା ଅଛି ।

ପ୍ରୀତି—କହର ବାବୁ, ନମସ୍କାର ।

ଛାୟା—ଧେତ୍ ! ସେ କହର ବାବୁ ନୁହନ୍ତି ପ ।

ପ୍ରୀତି—ଓ ! କି ସାଙ୍ଘାତିକ ଭୁଲ ( ପଳେଇବାକୁ ବସିଲା )

ଛାୟା—ପ୍ରୀତି ! ଶୁଣନା ।

ପ୍ରୀତି—ନା ଭାଇ ! ମୁଁ ଯାଉଛି । ଅଜି ରବିବାରଟା ଅନ୍ତତଃ ବ୍ୟାଡ଼ମିଣ୍ଟନ ର ଗୁଟିଏ Game ବି ଖେଳିବାକୁ

ହବ ! ଚୋର ଯେତେବେଳେ ନିହାତି ନ ଯିବାର କଥା—
ତା ଛଡ଼ା···ଜହର ବାବୁ ଆସିବେ, ତାଙ୍କୁ ଆଦର ଅଭ୍ୟର୍ଥନା
କରିବାର୍ ଭାର ତୋ ଉପରେ—

ଜହର—( ବାଧାଦେଇ) ହିଁ, ତାଙ୍କୁ ଯିବାକୁ ଦଅନ୍ତୁ । ଆପଣ ଖୁବ୍
ଆଦର ଅଭ୍ୟର୍ଥନା କରିପାରିବେ ।

ଛାୟା— You Mr. ଉପରେ ପଡ଼ି କଥା କହିବାକୁ ଆପଣ
କିଏ ?

ପ୍ରୀତି—ଅନ୍ୟ ଦେଶର ଏଇସବୁ ସଭ୍ୟତା ପ୍ରାଚୀନ ଭାରତବାସୀ
ପରିଚୟ ମାନ । ଅଚ୍ଛା, ମୁଁ ଆସେଁ । ଲେଖକଙ୍କର ଦର୍ଶନ
ମୋ ଭାଗ୍ୟରେ ନାହିଁ । ( ଗୃହତ୍ୟାଗ )

ଛାୟା—ହୁଁ ! ଆପଣ ମହାଶୟ କିଏ ଅଛନ୍ତି ?

ଜହର—ରକ୍ଷା ହେଲା । ଆପଣ ମତେ ବୋଧହୁଏ ଜାଣନ୍ତି ?

ଛାୟା—ଖୁବ୍ ଜାଣିଛି Sir. ପଇସା ଦେଇ ଜହର ରଚନାବଳୀର
କପି ଆଣିଲି ; ମାତ୍ର ମୋର ବନ୍ଧୁପତ୍ନୀ ଟେବୁଲ ତଳେ
ଭିତରେ ଲୁଚେଇ ଦେଇ ମତେ ସେଦିନ ଆପଣମାନେ
ଯୋଉ ହଇରାଣ କରିଥିଲେ, ସେ କେବଳ ଆଜି ନୁହେଁ—
ଚିରଦିନ ମୋର ମନେ ରହିବ । ଜହର ବାବୁ ହେ
ଆପଣମାନଙ୍କ ପରି ଶିକ୍ଷାଗୁରୁବିରୋଧୀ ଲୋକମାନଙ୍କୁ ତାଙ୍କ
ପ୍ରେସରେ ସ୍ଥାନ ଦେଇଥିଲେ ଏ ତାଙ୍କର ନିର୍ଘାତ ଭୁଲ୍ ।

ଜହର—ଠିକ୍ ମନେ ପକେଇଚନ୍ତି । ଆପଣଙ୍କର Chemistry
ବହି ଖଣ୍ଡିକ ପାଇଁ ସେଦିନ ଏକା ଭାରି ବିବ୍ରତ ହେଇଥା ।

ଛାୟା—ଖୁବ୍ ବାହାଦୁରୀ କରିଚନ୍ତି । ଆପଣ, ଆଜି ସେ ଜଙ୍ଗଲି
ଦେବକୁମାର । ଇସ୍ କି ଅଭଦ୍ର ! ଆପଣମାନେ ଯେ କଣ, କି
ମୁସ୍କିଲ—

ଜହର—ସୁଧାଂଶୁ ବାବୁ ଅଛନ୍ତି ?

ଛାୟା—କାହିଁକି ? ସେ ନୂଆ ପ୍ରେସ ଖୋଲିବା କଥା ଶୁଣି ବେଶି ଦରମା ଆଶାରେ ଛୁଟି ଆସିଲେ ନା କଣ ? ଫେରିଯାନ୍ତୁ, ଆପଣଙ୍କ ପରି ଲୋକଙ୍କୁ ଦରମା ଦେଇ ରଖିବାର ମହାଭୁଲ ସେ କରିବେ ନାହିଁ ।

ଜହର—କିନ୍ତୁ ଦେଖନ୍ତୁ, ଗୁରୁଙ୍କର ଖଣ୍ଡିଏ ନ ପାଇଲେ ଗରିବର ସଂସାର କେମିତି ଚଳିବ ? ବିଶେଷତଃ ପ୍ରେସରେ ଗୁରୁଙ୍କ କରିବା ଛଡ଼ା ମୋର ଅନ୍ୟ କିଛି ଉପାୟ ନାହିଁ । ଆପଣ ଯେବେ ବିବେଚନା ନ କରନ୍ତି, ଅନେକଗୁଡ଼ିଏ ନିରୀହ ପ୍ରାଣୀ ଉପାସରେ ଗଡ଼ି ମରିବେ

ଛାୟା—ଆପଣଙ୍କ ଦେହରେ ଅନେକ ତାକତ ଅଛି, ଯାଆନ୍ତୁ, କୋଉଠି ଗୁଣ୍ଡାମି କଲେ ରୋଜଗାରର ଅଭାବ ରହିବ ନାହିଁ ।

ଜହର—ମୋ ଭିତରେ ଗୁଣ୍ଡାର ହର୍ଷାନ କୋଉଠୁ ପାଇଲେ ?

ଛାୟା—ତା'ର ପ୍ରମାଣ ଦବ ଗୋଟାଏ ଆଇନା । ଦର୍ପଣ ସାମନାରେ ଛିଡ଼ା ହେଲେ ନିଜର ଚେହେରା ବୁଝିପାରିବେ ।

ଜହର—ହେଲା ଆପଣଙ୍କ କଥା ମାନିଲି । କିନ୍ତୁ ଗୁରୁଙ୍କ ଖଣ୍ଡକ ମୋର କେତେଦୂର ଦରକାର ସେ କଥା ଆପଣଙ୍କର ନିଜେ ବିବେଚନା କରିବା ଉଚିତ ।

ଛାୟା—କୋଉ ମୂର୍ଖବର ସାହସ୍ତ ଭୟ ନାହିଁ ଯେ ଆପଣଙ୍କ ଭଳି ଅସମ୍ଭବ ଗୁଣ୍ଡା ଗୁରୁଙ୍କକୁ ଦରମା ଦେଇ ରଖିବ ?

ଜହର—ଭୁଲ ବୁଝିଚନ୍ତି ମିସ୍ ଶ୍ରୀମନ୍ତ ! ମୁଁ ଜହର ଅଳି ଗୁରୁଙ୍କ ଭିତରେ ଫୌଜଦାରୀ, ଦଙ୍ଗା ହେଙ୍ଗାମା ହେଇଥାଏନା । କାରଣ ଖାଇବା ମୁଠେ ଭାତ ପାଇଁ ମାଲିକ କତିରେ ଚେଷ୍ଟ

ହାତରେ ଉଞ୍ଚେଇଲା ଠେଙ୍ଗା ବି ଢୋହଲ ହେଇ ହାତରୁ ଖସିପଡ଼େ । ଗୋଲାମି ଜୀବନର ଏ ଅତି ମାମୁଲି ଦୁର୍ଘଟଣା ।

ଛାୟା—ତା'ହେଲେ ନିତାନ୍ତ ଗୃହକର୍ମ କରିବେ ଦେଖୁଛି । ଆଚ୍ଛା ମୁଁ ବିବେଚନା କରିବି । ( ବିଚାରକ ହିସାବରେ ଗମ୍ଭୀରଭାବରେ ବସି ) ହୁଁ, ଆଗେ କହନ୍ତୁ ତ, ଅନ୍ୟ କିଛି ନକରି ଗୃହକର୍ମ କରିବାକୁ କାହିଁକି ଆସିଲେ ?

ଜହର—ଆମର ଶିକ୍ଷା, ଦୀକ୍ଷା, ସଭ୍ୟତା ଆମକୁ କେବଳ ଗୋଲାମି କରିବାକୁ ଶିଖେଇଛି । ତା ଛଡ଼ା ଆମର ଅନ୍ୟ ସମ୍ବଳ ନାହିଁ ।

ଛାୟା—ଏ ଆପଣଙ୍କ ସଂକୀର୍ଣ୍ଣ ମନୋବୃତ୍ତିର ଗୋଟାଏ ଧାରଣା ମାତ୍ର । ଆଚ୍ଛା, ଆପଣଙ୍କର ରୋଜଗାର ଉପରେ କେତେ ଜଣ ନିର୍ଭର କରନ୍ତି ? ଅର୍ଥାତ୍ ଗୃହକର୍ମ ନପାଇଲେ କେତେଜଣ ଉପାସରେ ଗଡ଼ି ମରିବେ ?

ଜହର—ସମସ୍ତେ ! ମାନେ ପିଲାପିଲି, ପରିବାରର ସମସ୍ତେ ।

ଛାୟା—( ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ବିବ୍ରତ କରି ପକେଇଲେ ) ସେମାନଙ୍କୁ ଚଳାଇବାର ଯଦି କ୍ଷମତା ନ ଥିଲା, ଆପଣ ସଂସାର କଲେ କାହିଁକି ?

ଜହର—ଆପଣ କ'ଣ କହିବାକୁ ଚାହାନ୍ତି ଯେ ଗରିବ ମା ବାପଙ୍କର ପୁଅ ହେଇ ଜନ୍ମିବା ମୋର ଭୁଲ ହେଇଛି ?

ଛାୟା—ନା ! ସେ ଭୁଲ ହୁଏତ ସେ ବାପ ମାଙ୍କର । କିନ୍ତୁ ବିବାହ କରି ସଂସାର କରିବା ଆପଣଙ୍କର ଭୁଲ । ଆଜି ଯେବେ ପୁଅ ଝିଅ ଥାଆନ୍ତି, ସେମାନଙ୍କୁ ଚଳାଇବାପାଇଁ ଆପଣ ଧର୍ମତଃ ଦାୟୀ ।

ଜହର—ଆପଣ ଯୋଉ ଫଇସଲା କଲେ, ସେଥିରେ ଭଗବାନଙ୍କୁ ଦୋଷୀ ସାବ୍ୟସ୍ତ କରିବା କଥା । କାରଣ ଗୋଟାଏ ନିତାନ୍ତ କଙ୍ଗାଳ ଘରଣରେ ଆମମାନଙ୍କୁ ଜନ୍ମଦେବା ନିହାତି ଅନ୍ୟାୟ ।

ଘ୍ନପୂା—ତାହାହେଲେ ଗୁଡ଼ତର ଦରଖାସ୍ତ ଦେଇ ଭଗବାନଙ୍କ ପାଖରେ ପେଶ୍ କରିବେ ।

ଜହର—(ହସିଲେ)

ଘ୍ନପୂା—ହସିଲେ ଯେ !

ଜହର—ଆପଣଙ୍କ ନିର୍ବୋଧତା ଦେଖି । ଗୋଟାଏ ଅବାନ୍ତର କଥାକୁ ମୂଳକରି ପ୍ରଶ୍ନ ଉପରେ ପ୍ରଶ୍ନ, ଜେରା ଉପରେ ଜେରା କରି ଆପଣ ମୋର ସମୟଗୁଡ଼ାକ ଯେତେଦୂର ମୂଲ୍ୟହୀନ କରି ପକାଉଛନ୍ତି, ପ୍ରକୃତରେ ମୋର ସମୟ ସେତେ ମୂଲ୍ୟହୀନ ନୁହେଁ ।

ଘ୍ନପୂା—କେବଳ ନିଜ ବିଷୟ ଭାବି ବ୍ୟସ୍ତ ହେଉଛନ୍ତି କାହିଁକି ? ଆପଣଙ୍କର ଏଠାକୁ ଆସି ଅନଧିକାର ଚର୍ଚ୍ଚା କରିବାରେ ମୋର ମଧ୍ୟ ଢ଼ସ୍ନଙ୍କର କ୍ଷତି ହେଉଛି । ଏ 'ଜହର' ବହି ଖଣ୍ଡିକ ଶେଷ କରିବାର ସୁଯୋଗ ମୁଁ ହରାଉଛି ।

ଜହର—ମତେ ଅଯଥା ଗପେଇ ଗୁଳିଚନ୍ତି ଆପଣ । ତା ଛଡ଼ା ସୁଧାଂଶୁ ବାବୁଙ୍କପାଇଁ ଯେତେବେଳେ ଅପେକ୍ଷା କରିବାର କଥା, ଖାଲି ବସିବା ଅପେକ୍ଷା ଆପଣଙ୍କପରି ସାଥୀର ସାହଚର୍ଯ୍ୟରେ—

ଘ୍ନପୂା—ଆପଣ ବସନ୍ତୁ ! ଆପଣଙ୍କର ମାଲିକ ଜହରବାବୁ ବୋଧହୁଏ ଆସିବେ ଏଠିକି ।

ଜହର—ସତେନା କଣ ?

ଘ୍ନପୂା—ହଁ, ଭାଇଙ୍କ ପାଖରେ ତାଙ୍କର ଦରକାର ଅଛି । ଭାଇ ବାହାରକୁ ଯାଇଚନ୍ତି । ସେ ଆସିଲେ ମୁଁ ତାଙ୍କର ଆଦର ଅଭ୍ୟର୍ଥନାର ଭାର ନେବି ବୋଲି ଭାଇଙ୍କର ବାରମ୍ବାର ତାଗିଦ୍ । ଧୂମକେତୁର ପ୍ରତିଭାପୂର୍ଣ୍ଣ ସମ୍ପାଦକ, ଜହରର ସ୍ୱନାମଧନ୍ୟ ଲେଖକ, ପ୍ରଦେଶରେ ଯାହାର ଶତମୁଖୀ ପ୍ରଶଂସା ।

ଜହର—ତାହାହେଲେ ବଡ଼ ଗୋଲମାଳରେ ପଡ଼ିଲି । ନା, ଆପଣଙ୍କ ସାଙ୍ଗ ଖଣ୍ଡିପିବାକୁ ହବ ଦେଖୁଛି ।

ସ୍ୱପ୍ନା—ତାର ମାନେ ?

ଜହର—ଧରା ପଡ଼ିଯିବାର ସମ୍ଭାବନା—ଖ୍ୟାତନାମା 'ଜହର' ବାବୁଙ୍କ ସାଙ୍ଗରେ ମୋର ସବୁକଥାରେ ଅମେଳ କନା—

ସ୍ୱପ୍ନା—ଅଚ୍ଛା, ଶ୍ରୀଯୁକ୍ତ ମହାଶୟ ! ଜହର ବାବୁ ବର୍ତ୍ତମାନ କୋଉଠି ରହୁଛନ୍ତି !

ଜହର—ତାଙ୍କ ରହିବା ଯାଗାରେ ଅଛନ୍ତି—ଅଗ୍ନି ପ୍ରେସ ବନ୍ଦ କ ନା, ବୋଧହୁଏ ଠିକ୍ ଯାଗାରେ ଥିବେ ।

ସ୍ୱପ୍ନା—ଆପଣଙ୍କ କଥାଗୁଡ଼ାକରେ ବହୁତ କିଛି ରହୁଛି—ପ୍ରତ୍ୟେକ କଥା ଶେଷରେ ଗୋଟାଏ ଗୋଟାଏ ଅସମାପିକା । ଅଚ୍ଛା, ଆପଣ କଏ କହନ୍ତୁ ତ ?

ଜହର—ସେଇ କଥାଟି ବହୁତ ଉତ୍ତରୁ ପଗ୍ଭରିଥିଲେ ତ ଭଲ ହୋଇଥାନ୍ତା—

ସୁଧାଂଶୁ—( ପ୍ରବେଶ କରି ) ତୁ ଠିକ ଯାଇଚୁ ସ୍ୱପ୍ନା ? ସାଧାରଣ ବେଶରେ ଜହର ବାବୁଙ୍କର ଆସିବା ତୋର ଧାରଣାର ଅତୀତ ଥିଲା—ନମସ୍କାର ଜହର ବାବୁ ।

ଜହର—ନମସ୍କାର !

ସ୍ୱପ୍ନା—( ଚମକି ) ଆପଣ ଜହର ବାବୁ ! ( ଆନନ୍ଦ, ଆଗ୍ରହ, ବିସ୍ମୟରେ ସେ କିଂକର୍ତ୍ତବ୍ୟବିମୂଢ଼ା ହୋଇଗଲା ) ନମସ୍କାର । ନାମ ସାର୍ଥକତା କରିଚନ୍ତି ଆପଣ ।

ଜହର—ସ୍ୱପ୍ନା ଦେବୀ ! ଜହରକୁ ଜହର ଭାବିବାର ଉଚିତ । ସେ ସବୁବେଳେ ଭୀଷଣ, ସାଙ୍ଘାତିକ—ତା ପଛରେ ଥାଏ ବନ୍ଧୁକର ସୂଚନା ।

---





## ପ୍ରଥମ ଦୃଶ୍ୟ

—ଘନଶ୍ୟାମଙ୍କ ଗୃହର ଅଭ୍ୟନ୍ତରସ୍ଥ କକ୍ଷ—

( ସିନ୍ ଉଠିଲା ବେଳକୁ ଦେଖାଗଲା, ଖଣ୍ଡିଏ ଆସନ ଉପରେ ବସିଛନ୍ତି ଘନଶ୍ୟାମ, ପାଖରେ ପ୍ଲେଟ୍ ଗ୍ଲାସ୍ଟିଏ ଓ ଔଷଧ ପୁଡ଼ିଆ )

ଘନ—( ଔଷଧ ଖାଇସାରି ) ନିଇକି ହେ କୁଆଡ଼େ ଗଲ କି ? ଅଜବୁ କ୍ଷୀର ଚୋପାଭ ଅସି ପାରେନା ଯେ ଠିକ୍ ବାହା- ବେଳେ ବାଇଗଣି ଚୁଆ—ଅଲକ୍ଷଣା ଘରେ ସମସ୍ତେ ସମାନ ! କୁରୁକ୍ଷେତ୍ର ବାଛିବାକୁ ସମସ୍ତେ ବେଶ୍ ଧୁରନ୍ଧର । ଜଣ ବୋଉ ! ଅଣିଲ କି ନାହିଁ ମୁଁ ଉଠିବି ?

ପିଆଜ—( ଖାଲି ଚାହିଁଅଛି ଧରି ଆସିଲେ ) ଉଠି ଯାଉନ କାଏ ଧରି ରହୁଛ କି ? ଓଲେଇ ଠାକୁର ଘରେ ଭୋଗ ଦବବଠା ବହୁତ ଯେ ଦରକାରବେଳେ କାମରେ ଅସିବ । ( ଛାଟିଅଛୁ ଅଗରେ ଜଗୃଡ଼ ଦେଲେ ) ଲଅ—

ଘନ—ଅହା ଛାଟିଆ ବେଣ୍ଟିକ ଉପରେ ଏତେ ସ୍ରଗ କାହିଁକି ? ତୁମମାନଙ୍କ କଂସାବାସନ ଦଖଣ୍ଡ ସଫା ହୋଇଯିବ ଦେଖୁଛି । କଣ ହେଉଛି ? କ୍ଷୀର ନାହିଁ ନା କଣ ?

ପିଅର—ଅଛୁ, ଖାଇବ ! ହେତେବେଳେ କରେଇ ଉପରେ ଥାଳ ଘୋଡ଼େଇ ଦେଇ ତୁମର ଅଗରେ ଗଡ଼ଅଛୁ ଗଲି—ଅସି ଏଇନେ ଦେଖିଲି ବେଳକୁ ଖାଲି କରେଇ । ପଗୁରଲି ବେଳକୁ ବୋହୂବଣୀ ଟିଙ୍କାର ହୋଇ କଜଚନ୍ତି "ବେଜାଣି ! ମୁଁ କଣ ଖାଇଗଲି କି ? ବିଲେଇ ଖାଇ ଯାଇଥିବ ।"

ଘନ—କିନ୍ତୁ ଖାଇଛି କିଏ ?

ପିଅର—ମୁଁ ଖାଇଦେଲି, ଗଣ୍ଡବଧର ଝିଅ—ମୋ ଦାଦକରେ ଦୁଧ ଘିଅ ଖାଇ ନାହିଁ କନା—

ଘନ—ହୁଁ, ଏଇ ଯୋଉ ଲୋକସାନ ହେଲା, ତାର ଦାମ ଦେବ କିଏ ?

ପିଅର—ତୁମେ ପରା ମୋତେ ସବୁଥିରେ ଦୋଷ ଦିଅ, ଏବେ ଦେଖିଲ ତ ? ନିଅଂଶୀଧର ଝିଅ ଘରେ ଗୋଡ଼ ଦେଲାକ୍ଷଣି କେମିତି ଲକ୍ଷ୍ମୀ ଛାଡ଼ଯାଉଛି ।

ଘନ—ତୁମେମାନେ କେହ୍ନ ଭଲଲୋକ ନୁହଁ; କେତେଟା ଧନ ଗଲେ ମତେ ଦୁଅଳଅ କର ଛାଡ଼ିବ । କ୍ଷୀର ଅଧସେର ଅଚାରଣେ ଗଲା । ଜଣ୍ଡବୋଜ ! ଏ ଘରେ ଯେତେ ବିଲେଇ ଅଛନ୍ତି ସମସ୍ତଙ୍କି ବାନ୍ଧା କର । ଘରେ କଳା କନା ବୁଲେଇ ମୋ ଭେଳା ବୁଡ଼େଇ ଦେବେ ।

ପିଅର—ବିଲେଇର କିଛି ଦୋଷ ନାହିଁ । ସବୁ ଏଇ ଉପରମୁର୍ଦ୍ଧୀର ଦୋଷ ।

ଘନ—ଜଣବୋଉ ! ତୁମର ସେ ଉଲମୁଣ୍ଡୀ କଥାଗୁଡ଼ାକ ରଖ, ! କେହୁ ମଣିଷ ନୁହଁ, ସମସ୍ତେ ଗୋରୁ । ପଇସାଟିଏ ଘରକୁ ଆସିବାକୁ ନାହିଁ, ଏଣେ ସୁଅମୁହଁରେ 'ବୋହୂଯାଉଛି । ହଉ ଯାହା କରୁଚ କର, ମୋର କଣ୍ଠ କହିବା'ଚାଲିଲ ।

ପିଅର—ଔଷଧ ଖାଇଲ କି ନାହିଁ ?

ଘନ—ଖାଇଲିଣି, ଖାଇଲିଣି ! ତୁମର ସେ ସୋହାଗିଅ କଥାଗୁଡ଼ାକ ରଖିଦେଇଥା । ବୋହୂଟା ନୂଆହେଇ ଯେମିତି ତୁମେ ସାତ-ପୁରୁଷ ହେଇ ସେମିତି । କେହୁ ଘରଟାକୁ ସଜାଡ଼ିବାର ଚେଷ୍ଟା କରୁନା ; ସମସ୍ତେ ଭାଙ୍ଗିବାର ଯୋଗାଡ଼ କରୁଚ । ମୁଁ ତୁମମାନଙ୍କୁ ଟିକ୍ ହାଡ଼େ ହାଡ଼େ ଚିହ୍ନିଚି ।

ପିଅର—( କୃତ୍ରିମ କ୍ରନ୍ଦନ ଉଚ୍ଛ୍ୱାସରେ ) ମୁଁ, ଘର ଭାଙ୍ଗିଦଉଚି ? ସବୁକଥାରେ ମୋର ଦୋଷ ଦବାକୁ ଥାଏ ତୁମର ? କାହିଁକି, ମୁଁ କଣ ଖାଇ ଯାଉଚି ନା ନେଇ ଯାଉଚି ମ ? ମୁଁ ଯଦି ତୁମକୁ ଅଡ଼ୁଆ ହେଉଚି ମୋର ଦରକାର ନାହିଁ । ତୁମେ ତୁମର ପୁଅ ବୋହୂଙ୍କୁ ନେଇ ରୁହ ।

ଘନ—କହୁଚ ପରା ମାଇକିନିଅଙ୍କର ଆଖି ପାଣି ଦେଖି ନରମିଯିବା ଲୋକ ମୁଁ ନୁହେଁ । ମୁଁ ବି ମୋର ଶେଷକଥା କହିଦଉଚି । ଏଣିକି ଯେବେ ଏମିତି ଲେକଚସାନ ହୁଏ ତୁମ ଶାଶୁ ବୋହୂ, ପୁଅଙ୍କର ଗୋଟେ ହାଣ୍ଡି ଆଉ ମୋର ଗୋଟେ ହାଣ୍ଡି। ବୁଢ଼ାଦିନେ ହାତରେ ଫୁଟେଇ ଖାଇଲେ ବି ମୋର ଦୁଃଖ ନାହିଁ ।

ପିଅର—ସେ ଧମକ ଆଉ କାହାକୁ ଦେଖେଇବ । ବୟସରେ ପୁଅ ଗଲେ ଗୁହକିସି କରିବାକୁ ଯେ ଏତେଦିନ ହେଲା ଖଣ୍ଡେ ଛିଟି ପଇସ ନାହିଁ । ଏଣେ ବାପ ଅଲଗା ହାଣ୍ଡି କରିବେ ।

କରୁନା, କିଏ ମନା କରୁଛ କି ? ହାତରେ ଝୋଟେଇ କରି ବୋହୂକୁ ଯେବେ ମୁଣ୍ଡ ଉପରେ ବସେଇବାର କଥା, ତୁମେ ଉଠାଅ । ମୋଦ୍ୱାରା ସେ କାମ ହବନେଇଁ ।

ଘନ—ନାଃ ତୁମେ କିଛି କରିପାରିବ ନାହିଁ ଖାଲି କଣ୍ଟା ବାଡ଼ରେ ଲୁଗା ପକେଇ କୁରୁକ୍ଷେତ୍ର ଦେଖା ଶିଖିଛ । ଯେତେସବୁ ଅପଦ ଉପଦ ଅସି ଏଇଠି । ( ରାଗରେ ଗୁଲିଗଲେ )

ପିଅର—(ମନକୁ ମନ କହୁଥିଲେ ) ହାଇରେ ବିଧାତା ! ସୁଖରେ ଦିନ କଟିବ ବୋଲି ମୁଁ ସିନା ବୋହୂ କରିଥିଲି । ହେଲେ ଏମିତି ଓଲେଇ ଡାକୁଣୀଙ୍କ ପରି ହୁଅ ଯେ ଅସି ଘରେ ଗୋଡ଼ ଦେଲାଦିନଠୁ କୋଉଦିନ ଘରେ କଳିଅ ଛାଡ଼ ନାହିଁ । (ବିଦ୍ୟୁତ୍ ବଦନରେ ପ୍ରବେଶ କଲା ରାଧା )

ରାଧା—ମୁଁ ତ କୋଉଦିନ କଳିଅ କରୁନାହିଁ ବୋଉ ?

ପିଅର—ନାହିଁ, ମୁଁ କଣ୍ଟାବାଡ଼ରେ ଲୁଗା ପକେଇ କଳିଅ କରୁଛି । ମୋ ହୁନମାଙ୍କ କପାଳ ଲୋ ଝିଅ, ମୋ ହୁନମାଙ୍କ କପାଳର ଦୋଷ । ଦିନ କେତେଟା ନ ଯାଉଣୁ ଗୁଣ ତ ବାହାରି ପଡ଼ିଲାଣି, ଅଜିତ ଦିହକପାଳ ଅଛି । ହଉଛେ ମା ଏଇ ଆଖି ଯେତେରେ କେତେ ଦେଖିବ, ଏଇ କାନ କେତେ ଶୁଣିବ !

ରାଧା—ବୋଉ !

ପିଅର—ଜାଣେ ଲୋ, ଜାଣେ ସବୁ ଜାଣେ । ବୋଉ କଥା ମତେ ଆଉ ଅଜଣା ନାହିଁ । ଯାହାର ଯୋଉ ଗୁଣଗ୍ରାମ ସେ କଣ ଆଉ ଅଛପା ଅଛି ? କେମିତି ତ ଜାଣିଶୁଣି ବାହା ହେଉଛ, ସେଇଥିପାଇଁ ସେ ସବୁ ଦେଖି ଅଖି ବୁଜିଦିଏ । ଅଖିର ତୋର ଜ୍ୱାଳାରେ ପୁଅ ମୋର ଏତେଦିନେ ପରବାସ ଗଲା ।

ରାଧା—ତୁମେ କଣ କହୁଚ ମୁଁ କିଛି ବୁଝି ପାରୁନେଇଁ ବୋଉ !
ମୋ ସକାଶେ କଏ କାହିଁକି ପରିବାସ କରିବ ?

ପିଅର—ଛୋଟ୍ଟ ନାଅଁ ଲଗା ମନକୁ ପଗୃର ଲୋ ପଗୃର । ଛଲେଇ
ପିନା ଅଖି ବୁଜି ଦୁଧ ପିଏ, ତାକୁ ସମସ୍ତେ ଦେଖନ୍ତି ମ ।
ଗ୍ରୈର ଘରେ ଅଛ କଣ ସବୁଦିନେ ଅଲୁଅ ଅଛି ?
ହିଁ ଲୋ ମା ! ଚକମକିଆ ରୂପ ଅଛି, ବଅସ ଅଛି ।

ରାଧା—ଛି, ତୁନି ହୁଅ, ମୋ ରାଣ—

ପିଅର—ତୁନି ହେବି କିଅଁ ମ ? ଏ ଘରେ କଣ ମୋର ଅଧିକାର
ନାଇଁ କି ? କାହା ବୋପାର ସାଧ ମତେ ତୁନି କରିବ ?
ମୁଁ କଣ କାହାର ଖାଏ ନା ଧାରେ ? ବାଅଁଶଖାଇ ଝିଅର
କଥା ଶୁଣ ! ତୁ ଭାବିଚୁ ମୁଁ କିଛି ଜାଣେ ନାଇଁ ?
ବାହାଘର ଆଗରୁ ନାଥିଆ ସାଙ୍ଗରେ ଭାବନାଭ ଥିଲୁ
ବୋଲି ସବୁଦିନେ କଣ ସେଇଆ ସାତେ ? ତୁ ଅବାଟା
ଘରର ବୋହୂ । ଗ୍ରୋଗସ୍ତି କୂଳେ ନିଗୁଡିଆ ବେଳେ ତା
ସାଙ୍ଗରେ ଏତେ ଗେଲ ନକଲି—

ରାଧା—(କାନ୍ଦ କାନ୍ଦ) ହା ଭଗବାନ ! ବୋଉ ! ତୁମେ ଅଧର୍ମ
କଥାଗୁଡ଼ାକ ତୁଣ୍ଡରେ ଧରୁଚ ?

ପିଅର—ତୁନିହ ! ଭଗବାନଙ୍କ ଦ୍ୱାହି ଦେଇ ଏ ଘରର ଅକଲ୍ୟାଣ
କରନା । ମତେ ଅଧର୍ମ ଧର୍ମ ତୁ ଶିଖେଇବୁ ! ବାହାଘର
ଆଗରୁ ଯାହାସବୁ ଗୁଣଗ୍ରାମ ତୋର ଶୁଣାଯାଉଥିଲା ସେସବୁ
କଣ ମିଛ ?

ରାଧା—ସବୁ ମିଛ । ଅଛ ନାଥଭାଇ ଗାଁରେ ନାଇଁ ବୋଲି ତୁମେ
ତା ନାଁରେ ଏତେ କଥା କହୁଚ । ସେ କେବେହେଲେ
ମତେ ଖରାପ ଆଖିରେ ଦେଖେ ନାଇଁ । ତୁମେ ମିଛରେ…

**ପିଅର**—କଣ କହିଲୁ ଲୋ ସବାଖାଇ ! ମୁଁ ମିଛ କହୁଚି ? ଅଲୋ ଅଖି ଫୁଟି ଯିବ ଲୋ ଅଖି ଫୁଟିଯିବ । ତୋ ନାଁରେ ଯିଏ ମିଛ କହୁଥିବ ତା ଅଖି ଫୁଟିଯିବ । ତୋ ସଙ୍ଗରେ ଯିଏ ଛନ୍ଦ, କନ୍ଦ କରୁଥିବ, ତା ବଅଁଶରେ ବତୀ ଜାଳିବାକୁ କେହି ରହିବେ ନାହିଁ ।

ରାଧା—ଦେ ହେ ! ସେ ଅଭିଶାପ ଦିଅ ନା ତମେ ! ସେଥିରେ ଏ ଘରର ଅମଙ୍ଗଳ ହେବ । ଏମିତି ସର୍ବନାଶୀ କଥା ତୁଣ୍ଡରେ ଧରନ୍ତୁ ନାହିଁ ।

**ପିଅର**—କଣ କହିଲୁ ? (ଉଚ୍ଚ ସ୍ୱରରେ ଗର୍ଜ୍ଜନ କରି) ମୁଁ ସର୍ବନାଶୀ ? ଅଲକ୍ଷଣୀ, ଘର ଉପରେ ତୋର ଏତେ ଲୋଭ ? ବୋଉ ଦିନ ଏମିତି ଅଧିକାରୀ ହେବାକୁ ମନ କଲୁଣି ମ ? ଟେରସ୍ତ ଟେକ୍ସ କରିବାକୁ ଗଳିବୋଲି ଉପରେ ଚଢ଼ିବୁ କିଲୋ ? ସବାଖାଇ ! ଯାଉ ତ ଜଗୁର ତୋର ! ବୁଝିଲି ଲୋ ମା ବୁଝିଲି । ସାତଭ ଶାଶୁ ବୁଢ଼ା ଶଶୁର ତୋର ଘରର ବୁବ ଟୋଗ୍ଗଠା ହାତରେ ପଡ଼ିଲେ, ହାତରେ ନ ମାରି ଭାତରେ ମାରନ୍ତୁ ନା ? ଏତେ ଅଧିକାରୀ ହୋନା ମ ? ଭଗବାନ ତ ପୁଣି ମତେ ବଞ୍ଚେଇ ରଖିଚି, ତୁ ମାଲିକଅଣୀ ହବୁ କେମିତି ? ପ୍ରଭୁଙ୍କୁ ଦିନବଣ୍ଟ ଡାକ, ମୋ ଧନ କେମିତି ସରଯାଉ, କାନରେ ଗୁହ ନେନ୍ତା ବାନ୍ଧିବୁ ଯେ ସାଙ୍କବ ।

ରାଧା—(କାନ୍ଦ କାନ୍ଦ) ମୁଁ ତ ଏତେ ଛନ୍ଦରେ କଥା କହୁନାହିଁ ବୋଉ ? ବଡ଼ଘର ବୋହୂ ହେଇ ସ୍ୱଣୀ ସାଙ୍କ କାନରେ ଗୁହ ନେନ୍ତା ବାନ୍ଧିବାକୁ ମୁଁ ଗୁହେଁ ନା । ମୁଁ ଖାଲି ଭଗବାନଙ୍କୁ ଜଣେଇଚି ମତେ ଚଞ୍ଚଳ କେମିତି ମରଣ ହେଉ ।

**ପିଅର**—ଅହା-ହା, ଛୁନା ଲିହ ଗଡ଼ାନା । ବାଣ୍ଡଲୋକ ଜମା ହେଇ

ପଡ଼ିବେ । ମଲ ନେ ଶ୍ୱୋପର, କେତେ ଛଳ ଛନ୍ଦ ଜାଣନ୍ତି ନ !

ଘନ—(ପ୍ରବେଶ କରି) ମୋର ଠାକୁରାଣୀ ତା'ହେଲେ ସମସ୍ତଙ୍କ ଆଖିରେ କୁହୁକ ଲଗେଇଛି, ନା ? ଅଚ୍ଛା ! ମୁଁ ବି ଆଜି ତାର ମୋଟେ ବିଚାର କରୁଛି । ଜଗତଦୋଇ ! ଏ ଠାକୁରାଣୀ ମୋର । ଏ ଘରଦ୍ୱାରସବୁ ମୋର—ମୋର ସପ୍ତ ପୁରୁଷର । ମୋର ଯାହାକୁ ଖୁସି ତାକୁ ଚାବି ନେଇ ଦେବି । (ରାଧା ହାତରେ ଦେଇ) ନେ ମା, ସବୁ ଚାବି ଆଜିଠୁଁ ତୋରି ହାତରେ ରହିବ । ଏ ଘରର ହାନିଲାଭ ଭଲମନ୍ଦ ତୁଇ ସବୁ ବୁଝିବୁ ।

ରାଧା—(ଘନଶ୍ୟାମଙ୍କ ଗୋଡ଼ ତଳେ ଚାବିନେନ୍ତା ରଖି) ନାହିଁ ବାପା ! ଗରିବ ଦୁଃଖିଘର ଝିଅ ମୁଁ । ଏତେ ଗୁଡ଼େ ଚାବି ମୋ ପାଖରେ ରହିଲେ ଭାଇ ଭଗାର ହସିବେ । ବୋଉଙ୍କ ହାତରେ ଏ ଘରର ଭାର ଦିଅନ୍ତୁ, ସେଇଥିରେ ମୋର ଆନନ୍ଦ ।

ପାଅର—ଶୁଣିଲଣି ଠାକୁରାଣୀଙ୍କ କଥା ! କେତେ ବାଙ୍କରେ କଥା କହୁଛି ସେ !

ଘନ— ନା, ଜଗତରାଇ ! ବୋହୂକୁ ତୁମେ ଭୁଲ ବୁଝିଲ । ସେ ଏ ଘରର ଲକ୍ଷ୍ମୀ । ତା ମନ ତୁମ ମନପରି ଏତେ ଛୋଟ ନୁହେଁ (କହୁ କହୁ ପ୍ରସ୍ଥାନ) ।

---

## ଦ୍ୱିତୀୟ ଦୃଶ୍ୟ

( ଭଥାବାଣୀ କରୁ କରୁ ଶ୍ରୀଯୁକ୍ତ ଅମଳ ଚୌଧୁରୀ ଓ ସୁଧାଂଶୁ ପ୍ରବେଶ କଲେ )

ସୁଧାଂଶୁ—ବ୍ୟସ୍ତ ହବା ଦରକାର ନାହିଁ ବଏସାହେବ । ମୋର planକୁ କାର୍ଯ୍ୟକାରୀ କରବା ଦଗରେ ମୁଁ କେତେଦୂର ଅଗେଇଚ, ସେ କଥା ଅଖିରେ ନ ଦେଖିଲେ ଅପଣ ବିଶ୍ୱାସ କରବେ ନାହିଁ ।

ଚୌଧୁରୀ—ମୋର ଅବିଶ୍ୱାସ କରବାରେ କିଛି ନାହିଁ ସୁଧାଂଶୁ । ରାଜନୈତିକ ଚକ୍ରରୁ ଗ୍ରହଟା ଯେତେ ଶୀଘ୍ର ଖସିପଡ଼େ ସେତେ ମଙ୍ଗଳ । ସେଥିପାଇଁ କହର ଭଳି ଶକ୍ତିଶାଳୀ ଲୋକ ପଛରେ ମୁଁ ତୁମକୁ ନିଯୁକ୍ତ କରଛି । ମୁଁ ଜାଣେ ତୁମର କୌଶଳରେ ସିଏ ଦିନେ ଜାଲରେ ପଡ଼ିବ ।

ସୁଧାଂଶୁ—ପାହାଚ ଉପରେ ପାହାଚ ଅପକୁ ଅଗେଇବାକୁ ପଡ଼ିବ । ସତର୍କ ନହେଲେ ବିପଦର ସମ୍ଭାବନା ।

ଚୌଧୁରୀ—ତୁମର କଥାରେ ସେଦନ ହାଲସ୍‌ର ବାହାନା କର ପୁଣି ଥରେ କହର ସାଙ୍ଗରେ ମୋର ଗୋଟାଏ ବଚସା ହୋଇଗଲା । ବଚସା ତ ନୁହେଁ ବରଂ ଖଣ୍ଡପ୍ରଳୟ କହିଲେ ଚଳିବ । ମତେ କଣ କହିଲା ଜାଣ ? କହିଲା, ଦେଶର ଯେତେ ସବୁ ଅନୁଷ୍ଠାନ, ଗ୍ରାମ୍ୟସଙ୍ଘ, ଖାଦ୍ୟଭଣ୍ଡାର, ଅନାଥାଶ୍ରମ, ସମସ୍ତଙ୍କି ଅର୍ଥିକ ସାହାଯ୍ୟ କରନ୍ତୁ । ସେମାନଙ୍କୁ ବଞ୍ଚେଇ ରଖନ୍ତୁ । Scoundrelଟା ବୁଝେନା ଯେ ଅମମାନଙ୍କର ଜନ୍ମ ହୁକୁମ ତାମିଲ କରବାକୁ ନୁହେଁ, ହୁକୁମ ଦବାକୁ !

ସୁଧାଂଶୁ—ସେ ଶିକ୍ଷା ମୁଁ ସେ ସଇତାନକୁ ଦେବି । ଗୋଟାଏ ଭଲସ୍ୱାନ୍‌ର ଛାପା ନେଇ ଜହର ଯିବ ସେଣ୍ଟ୍ରାଲ ଜେଲ୍‌ର ଅନ୍ଧାର କୋଣକୁ । ରାଜ ବିଦ୍ରୋହୀ, ରାଜନୈତିକ ବନ୍ଦୀ ହିସାବରେ ନୁହେଁ—ଗୋଟାଏ ସାଧାରଣ କଏଦୀ ହିସାବରେ ।

ଚୌଧୁରୀ—ତୁମେ କଣ କହୁଚ ସୁଧାଂଶୁ ?

ସୁଧାଂଶୁ—ମିଛ କହୁନାହିଁ ମିଷ୍ଟର ଚୌଧୁରୀ ! ସେଇଠି ସଡ଼ି ସଡ଼ି ଜହର୍ ଯେତେବେଳେ ପୃଥିବୀରେ ବାହାରକୁ ଅସି ଜନତା ଆଗରେ ମୁହଁ ଦେଖେଇବ, ଲୋକେ ତାକୁ ଦେଖିବାକୁ ଘୃଣା କରିବେ । ସେଥିପାଇଁ ନୂଆ ପ୍ରେସ ଖୋଲିବାର କଳ୍ପନା କରିଚି, ଜହରକୁ ମୋ ଘରକୁ ବାରମ୍ବାର ନିମନ୍ତ୍ରଣ କରି ଛନ୍ଦାକୁ ତା ସଙ୍ଗେ ମିଳାମିଶା କରିବାର ସୁଯୋଗ ଦେଇଚି ।

ଚୌଧୁରୀ—ଛନ୍ଦା ? ତୁମର ସେଇ କଲେଜ ପାଠୁଆ ଭଉଣୀ ?

ସୁଧାଂଶୁ—Yes, ମିଷ୍ଟର ଚୌଧୁରୀ ! ସେଇ ଛନ୍ଦା ହବ ଜହରକୁ ଜଖମ କରିବାର ପ୍ରଧାନ ଅସ୍ତ୍ର । ଛନ୍ଦା ସୁନ୍ଦରୀ, ତରୁଣୀ, ଉଚ୍ଚ ଶିକ୍ଷିତା, ଅଧୁନିକା । ମୋର ଇଙ୍ଗିତରେ ସେ ଡିନାମାଇଟ୍ ପରି କାମ କରିବ । ବୁଝି ପାରୁଚନ୍ତି ସିଏ ସାହେବ ? ଜହର ପଛରେ ମୁଁ ଯୋଡ଼ି ଡିନାମାଇଟ୍ ଖଞ୍ଜିଚି, ସେ ବିଦ୍ୟୁତ ପରି ଗୋଟାଏ ସେକେଣ୍ଡରେ ଜହରକୁ ଜାଳି ପୋଡ଼ି ପାଉଁଶ କରିଦେବ ।

ଚୌଧୁରୀ—ସୁ···ଧା···ଶୁ !

ସୁଧାଂଶୁ—ନାରୀ ପୃଥିବୀରେ ଅତି ମାମୁଲି ଜୀବ । କିନ୍ତୁ ତା'ର ବିଷ ଦାନ୍ତରେ ସେ ବଡ଼ ବଡ଼ ଗୁଣିମାନଙ୍କୁ ଘାଏଲ୍ କରିଦେଇ

ପାରେ । ସ୍ତ୍ରୀ ପାଇଁ ସମ୍ରାଟ୍ ରାଜଗାଦୀ ଛାଡ଼ିଥିଲେ । ଶେଷ ଜୀବନରେ ନାରୀପାଇଁ ବିଜୟୀ ହିଟ୍‌ଲର ତାଙ୍କର ବ୍ରତ ଭୁଲିଥିଲେ । ପୃଥିବୀରେ ଅନେକ ଓଲଟ ପାଲଟ କରି ଦେଇଛି ଏଇ କୁହୁକିନୀ ନାରୀଜାତି । ଛାୟା ଉପରେ ମୋର ଭରସା ଅଛି ମିଷ୍ଟର ଚୌଧୁରୀ । ସେ ଠିକ୍ ତାର ଅଭିନୟ କରିବ । ପୋଟାସିୟମ୍ ସାଇନାଇଡ୍ ପରି ବିଷାକ୍ତ ଏଇ ଅସ୍ତ୍ରରେ ମୁଁ ଜହରକୁ ନିଃଶେଷ କରିବି; ଶବ୍ଦଭେଦୀ ବାଣପରି ମୋର ସନ୍ଧାନ ଏକାବେଳକେ ଅବ୍ୟର୍ଥ ।

ଚୌଧୁରୀ—କିନ୍ତୁ ସେଇ ଅଭିନୟ ଭିତରେ ଛାୟା ଯେବେ ଜହରକୁ ଭଲ ପାଇବାକୁ ଆରମ୍ଭ କରେ, ନିଜର ପ୍ରଣୟକୁ ବଞ୍ଚେଇବାକୁ ଯାଇ ସେ ଯେବେ ତୁମକୁ ଫାଙ୍କିଦିଏ ?

ସୁଧାଂଶୁ—ତା' ହେଲେ' ପୋଡ଼ି ମରିବେ ଉଭୟ । ସେ ବ୍ୟବସ୍ଥା ମୁଁ ଅଗଉଁ କରି ରଖିଛି ମିଷ୍ଟର ଚୌଧୁରୀ । ଦେଶର କଣ୍ଟା ଏଇ ସଜୀବ ଅଭିଶାପଟିକୁ ବାଟରୁ ହଟେଇବାକୁ ଯେବେ ଛାୟାକୁ ବଳି ଦେବାକୁ ପଡ଼େ, ସେଥିପାଇଁ ମୁଁ ପ୍ରସ୍ତୁତ ରହିଥିବି ।

ଚୌଧୁରୀ—ସୁଧାଂଶୁ ! ଛାୟା ଯେ ତୁମର ଭଉଣୀ !

ସୁଧାଂଶୁ—ଭଉଣୀ ! ହାଃ...ହାଃ...yes ରହିଥିବି । ଛାୟା ମୋର ଭଉଣୀ— । ହେଇଥି ପାଇଁ ତା ଉପରେ ମୋର ଯଥେଷ୍ଟ ଆସ୍ଥା ଅଛି ।

ଚୌଧୁରୀ—କିନ୍ତୁ ଛାୟାର ଭଲ ପାଇବାକୁ ଜହର ଯେବେ ଭ୍ରୂକ୍ଷେପ ନ କରେ ?

ସୁଧାଂଶୁ—ତରୁଣୀ ଝଲେଜଛୁଵୀର ସାନ୍ନିଧ୍ୟ କିଏ ନ ଚାହେଁ ରହିଥିବ ?

ପୁଣି ସାଥିହୀନ ନିଃସଙ୍ଗ ଜୀବନରେ । ଯୁବକ କର୍ମୀଟିକୁ ଯୌବନର ମୋହ ଟାଣି ନେଇଯିବ ସର୍ବନାଶର ନରକ ଭିତରକୁ । ଛନ୍ଦାର ପ୍ରେମ ବର୍ଜିନ୍ ଖୁବ୍ ଭଲ ପାଗଳ କରିଦବ ଜହରର ଅବିବାହିତ ହୃଦୟକୁ । ମୁଁ କେବଳ ଗୋଟାଏ ସୁଯୋଗ ଅପେକ୍ଷାରେ ଅଛି ମିଷ୍ଟର ଚୌଧୁରୀ !

ଚୌଧୁରୀ—ଅଚ୍ଛା ସୁଧାଂଶୁ ! ସେ ଷ୍ଟୁଡ଼େଓ ଫେରନ୍ତା ଦେବକୁମାରଟାକୁ ହାତରେ ରଖିପାରିଲେ ତ ମନ୍ଦ ହୁଅନ୍ତା ନାହିଁ ? ଲୋକଟାକୁ ଷ୍ଟୁଡ଼ିଓର ପ୍ରଲୋଭନ ଦେଖାଇ ବଶ କରିପାରିଲେ, ସବୁବେଳେ ଜହରର କାର୍ଯ୍ୟକଳାପ ବିଷୟରେ ସେ ଆମମାନଙ୍କୁ ସମ୍ବାଦ ଦେଇପାରନ୍ତା ।,ଅନ୍ତତଃ ଜହରର ଜଣେ ଦୁଇଜଣ ବିଶ୍ୱାସୀଲୋକ ଆମ ପକ୍ଷରେ ଥିବା ଦରକାର । ତା'ହେଲେ ଆମକୁ ଅନେକଟା ସୁବିଧା ହୋଇପାରେ ।

ସୁଧାଂଶୁ—ଦେବକୁମାର ! ଦେବକୁମାର ଦେଇ କିଛି ହୋଇପାରିବ କି, ନା—ମୁଁ ସେ କଥା ଭାବି ଦେଖିବି । ଆପାତତଃ ଛନ୍ଦାକୁ ମୂଳକରି ଆମକୁ ଆଗେଇବାକୁ ପଡ଼ିବ । ଆପଣ ନିଶ୍ଚିନ୍ତ ରହନ୍ତୁ ଦେଖାଯିବ ! ମୁଁ ଜହରକୁ ସମୁଚିତ ଗୋଟାଏ ଶିକ୍ଷା ଦେବି । ଦେଶସେବାର ଦ୍ୱାହି ଦେଇ ଅଭିନବ ପ୍ରହସନ ଆରମ୍ଭ କରିଛି, ମୁଁ ତାର ଶେଷ ଯବନିକା ଟାଣିବି ।

ଚୌଧୁରୀ—ତୁମେ ତା'ହେଲେ ଅଛ ଆମ ସୁଧାଂଶୁ । ଯଦି ଦରକାର ମନେକର, ଦେବକୁମାରକୁ ହାତ କରିବାର ଚେଷ୍ଟା କର । ଜହରକୁ ଜବଦ କରିବାକୁ ମୁଁ ମୋର ବ୍ୟାଙ୍କର ଏକାଉଣ୍ଟ୍

ନିଃଶେଷ କରିପାରେ । ସେ ଦଳର ଅପମାନ ଭୁଲିବା ମୋ ପକ୍ଷରେ ଅସମ୍ଭବ ହୋଇପଡ଼ିଛି ।

ସୁଧାଂଶୁ—ଆପଣ ନିଶ୍ଚିନ୍ତ ଥାନ୍ତୁ ମିଷ୍ଟର ଚୌଧୁରୀ ! ମୁଁ ତାର ବ୍ୟବସ୍ଥା କରୁଛି । ( ଜଲପୁଙ୍କର ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

[ଜହରର ପ୍ରେସ୍ ଫ୍ଲାଟ୍ର Hall room. ସିନ୍ ଉଠିଲା ବେଳକୁ ଦେଖାଗଲା ଜହର ଗୋଟାଏ ଚେୟାର ଉପରେ ବସି ଟେବୁଲ ଉପରକୁ ଝୁଙ୍କିପଡ଼ି କଣ ଲେଖିଚାଲିଛି । ଜହରର ଅଲକ୍ଷିତରେ ଛାୟା ଧୀରେ ଧୀରେ ପ୍ରବେଶ କଲା ଓ ଜହର ପଛଆଡ଼େ ଛିଡ଼ାହୋଇ ଲକ୍ଷ୍ୟ କରିବାକୁ ଲାଗିଲା ]

ଜହର—(ମୁଣ୍ଡ ଉଠାଇ ବହିର ଗୋଟେ ଅଂଶ ପଢ଼ିଲେ ) ସବୁଦିନେ ମା ତୁମର ଦାସୀ ହୋଇ ନଥିଲା । ତୁମେ ତାଙ୍କୁ ବେଢ଼ି ପିନ୍ଧାଇଛ । ମା ତୁମର ରାଜରାଣୀ । ତ୍ରିଶକୋଟି ପୁଅ ଝିଅଙ୍କୁ ଜନ୍ମ ଦେଇଛି ସେ, ଖୋଇ ପେଇ ମଣିଷ କରିଛି ସେ । ହିନ୍ଦୁ, ମୁସଲମାନ, ବୌଦ୍ଧ, ଶିଖ, ଖ୍ରୀଷ୍ଟିୟାନ—ସମସ୍ତେ ତାର ରକ୍ତରେ ଗଢ଼ା । ଅଥଚ ନିଜ ନିଜର ଜାତିଗତ ଓ ଧର୍ମଗତ ସ୍ୱାର୍ଥନେଇ ଗହନ ମାର ସ୍ୱାର୍ଥ ଏହଅ ଭିତରେ ବୁଡ଼ିଯାଇଛି । ପୃଥିବୀର ସମସ୍ତ ଶ୍ରେଷ୍ଠ ଜାତିଙ୍କର ଅଙ୍କାଶ୍ରୀ ହେଉଛନ୍ତି ମା ତୁମର ଅଛି ଉତ୍କଣ୍ଠା । ତାର ବିଶାଳ ସମ୍ପତ୍ତିର ମାଲିକ ଧନୀମାନେ—ସାତ ସମୁଦ୍ର ତେର ନଈ ପାରହୋଇ ଯିଏ ଆସିଥିଲେ ତୁମ ସାଙ୍ଗରେ ବୋଇତ ନେଇ ବେପାର କରିବାକୁ, ଜନ୍ମଭୂମିର ସ୍ୱାର୍ଥ ସ୍ୱାଧୀନତା ଟିକକ ଟେକି

ଦେଇ ଲାଭ ହାତରେ ? ଅକାରଣରେ ଭାଇ ଭାଇ ଭିତରେ ବାଦକରି ରକ୍ତନଦୀ ବୁହାଇବାକୁ ଲଜ୍ଜା ହୁଏନା ? ଶରଦନ ଗୋଲାମ ହେଇ ଦୁର୍ଭିକ୍ଷ ପ୍ରପୀଡ଼ିତ ଜରାଜୀର୍ଣ୍ଣ ରୁଗ୍‌ଣ ଶରୀର ନେଇ ଭିକାରୀର ଝୁଲିଧରି ଅହଙ୍କାର କରିବାକୁ ଲଜ୍ଜା ହୁଏନା ?

ଛାୟା—ଏଇଟା ନିତାନ୍ତ ଲମ୍ବା speech ହେଇଯାଉଛି ଯବଣିକ ନାଟକର ।

ଜହର—କିଏ ! ଓ ଛାୟାଦେବୀ ! ଅପଣ କେତେବେଳୁ ?

ଛାୟା—ଅପଣଙ୍କ ନାଟକର ଆରମ୍ଭରୁ । କିନ୍ତୁ ଏ କାନ୍ଥ, ଝରକା, ସିଡ଼ି ପ୍ରଭୃତି ନିର୍ଜୀବ ବସ୍ତୁଗୁଡ଼ାଙ୍କୁ ସଜୀବ କରିବାକୁ ଅପଣ ଯେ କାହିଁକି ଏତେଦୂର ବ୍ୟସ୍ତ, ବୁଝିପାରୁ ନାହିଁ ।

ଜହର—ଅପଣ ବୁଝିପାରିବେ ନାହିଁ ଛାୟାଦେବୀ ! ଅପଣଙ୍କର ସେ ପ୍ରାଣ ନାହିଁ । ଛିଡ଼ା ହେଇ ରହିଲେ ଯେ ? ବସନ୍ତୁ ।

ଛାୟା—(ବସି) ଥାଉ ଜହରବାବୁ ! ହଠାତ୍ ଅପଣ ନାଟକ ଅଡ଼କୁ ଝୁଙ୍କି ପଡ଼ିଲେ କାହିଁକି ? ତା' ଛଡ଼ା ଏଭଳି ବିଦ୍ରୋହୀ ଲେଖା କଣ ନାଟକର ଉଦ୍ଦେଶ୍ୟ ସାର୍ଥକ କରିପାରିବ ?

ଜହର—ଭୁଲ ବୁଝିଚନ୍ତି ଶ୍ରୀମତୀ ଛାୟା ! ପୁରୁଷ ଓ ସ୍ତ୍ରୀ ନେଇ ଗତାନୁଗତିକ ପ୍ରେମ ବା ଭକ୍ତି ପାଇବାକୁ ମୂଳକରି ନାଟକର କଥାବସ୍ତୁ ଗଢ଼ିବାର ଦିନ ଯାଇଛି । ଯୋଉ ନିଷ୍ପେଷିତ ଜାତିର ଜୀବନ ନାହିଁ, ଅକାରଣରେ ଯାହାର ଯୌବନ ମଉଳି ପଡ଼େ ଦାରିଦ୍ର୍ୟର କଷାଘାତରେ ସେହି କଙ୍କାଳହୀନ ଜାତିର ଅର୍ଥ ଯାତନାରେ କେଦାର-ଗୌରୀର ଅଭିନୟ ବାଢ଼ିବା କେବଳ ଅନ୍ୟାୟ ନୁହେଁ, ଅତି ଲଜ୍ଜାର କଥା । ଯୌବନକୁ ଉପଭୋଗ କରିବାର

ଅଧିକାର ଏ ପଙ୍ଗୁଜାତିର ନାହିଁ । ଚିରଦିନ ସେ ଖାଲି ଅଙ୍କିତ ବୁଟ୍ ଯୋଡ଼ାକର ପାହାର, ଚମଡ଼ାର ଗୁରୁତ୍ବ ।

ସ୍ୱପ୍ନା—ଜହର ବାବୁ !

ଜହର—କେବଳ ନାଟକରେ ନୁହେଁ ସ୍ୱପ୍ନାଦେବୀ ! ସାହିତ୍ୟରେ, ସଙ୍ଗୀତରେ, ଉପନ୍ୟାସରେ, ସବୁଥିରେ ଏ ପରାଧୀନ ଜାତିର ପ୍ରାଣରେ ଚେତନା ଜଗାଇବାକୁ ହେବ । ଅନେକ ବର୍ଷର ଗ୍ଳାନି ମୁଣ୍ଡରେ ବହି ଯେ ନଇଁ ପଡ଼ିଛି ତାକୁ ଉଠାଇବାକୁ ହେବ । ସେଇଥିପାଇଁ ମୁଁ କଳ୍ପନା କରିଛି ଏଇ ନାଟକ ଲେଖିବାକୁ । ଲେଖି ସମାପ୍ତ କରିବାକୁ ଗଢ଼ି ନାହିଁ । ତାକୁ ରଙ୍ଗମଞ୍ଚରେ ସାଫଲ୍ୟମଣ୍ଡିତ କରିବେ ମୋ ପ୍ରେସର ସହକର୍ମୀମାନେ । ଆପଣ ପଢ଼ିବେ ସ୍ୱପ୍ନାଦେବୀ ?

ସ୍ୱପ୍ନା—ସେଦିନ ଆଇଙ୍କ ସାଙ୍ଗରେ ଆପଣ ବାହାରକୁ ଚାଲିଗଲା ପରେ ମୁଁ ବହିର କେତେକ ଅଂଶ ପଢ଼ି ଦେଖିଲି । ଦେଶବାସୀଙ୍କ କାନରେ ଆପଣ କେବଳ ଜହର ଢାଳି ନାହାନ୍ତି, ଅମୃତ ଚାଖିବା ପାଇଁ ପନ୍ଥା ମଧ୍ୟ ଦେଖାଇଚନ୍ତି । ( ଟିକିଏ ରହି ) ଅଚ୍ଛା ଜହର ବାବୁ ! ମୋର ଗୋଟିଏ ଅନୁରୋଧ ରଖିବେ ?

ଜହର—କହନ୍ତୁ, ଚେଷ୍ଟା କରିବି ।

ସ୍ୱପ୍ନା—ଅଜ୍ଞା, ଆପଣ ବଦଳରେ ମତେ ତୁମେ ବୋଲି କହିଲେ ମୋର ସମ୍ମାନ ନିଶ୍ଚୟ ନଷ୍ଟ ହବନାହିଁ । ତା'ଛଡ଼ା ଶ୍ରୀମତୀ, ଦେବୀ ପରିବର୍ତ୍ତିରେ ସ୍ୱପ୍ନା ବୋଲି ଡାକିଲେ ଚଳିବ ଜହରବାବୁ ।

ଜହର—ଓ, ତା ··· ବେଶ୍। ମୁଁ ତୁମର ଅନୁରୋଧ ରକ୍ଷା କଲି ଛାୟା। ତୁମର ଆଉ କଣ କହିବାର ଅଛି ?

ଛାୟା—ଆପଣଙ୍କର ବ୍ୟକ୍ତିଗତ ଜୀବନର ଅନେକ କିଛି ଜାଣିବାକୁ ମୋର ଅନେକ ଦିନରୁ ପ୍ରବଳ ଆଗ୍ରହ ; ମାତ୍ର ଆପଣ ମନରେ କିଛି ଭାବି ପାରନ୍ତି ······

ଜହର—ବୁଝିଲି। ଆଳାପ ଓ ଅନୁରୋଧ ଛଳରେ ତୁମେ ଘନିଷ୍ଠଭାବ ପରସ୍ପର ବଢ଼ାଇବାକୁ ଚାହୁଁ। କିନ୍ତୁ ଛାୟା, ମୋର ବ୍ୟକ୍ତିଗତ ଜୀବନର ଇତିହାସ ଜାଣିବାକୁ ତୁମେ ହକଦାର ନୁହଁ।

ଛାୟା—ଅର୍ଥାତ ?

ଜହର—ବଡ଼ ଦୁର୍ବଳ ତୁମେ ଛାୟା ! ଭାବିଥିଲି, ସାଧାରଣ କଲେଜ ଛାତ୍ରୀ ଓ ଆଧୁନିକା ତରୁଣୀମାନଙ୍କ ତୁଳନାରେ ତୁମେ ମହତ୍।

ଛାୟା—(ମନ ଦୁଃଖରେ) ଏତେ ଶୀଘ୍ର ଆପଣଙ୍କର ବିଶ୍ୱାସ ହରେଇବି, ଏ ଧାରଣା ମୋର ନଥିଲା। ବେଶ୍, ସେ କଥା ଥାଉ। ଆପଣଙ୍କର ନାଟକର କଥାଇ କହନ୍ତୁ।

ଜହର—ଧରି ପଡ଼ିଯାଇଚ ଛାୟା। ତୁମେ ସ୍ତ୍ରୀ ଅବିବାହିତା ଯୁବତୀ, ତୁମର ଅନୁଭୂତି ବଡ଼ କୋମଳ। ନାରୀଜାତି ପ୍ରତି ଅନୁରାଗ ନଥିଲେ ମଧ୍ୟ ସେମାନଙ୍କର ଚରିତ୍ର ମୁଁ ବୁଝେ। ଅଚ୍ଛା, ତୁମର ଅନୁରୋଧ ରଖିବାର ଚେଷ୍ଟା କରିବି।

ଛାୟା—ଆପଣ ଯେତେବେଳେ ନିତାନ୍ତ କୁଣ୍ଠିତ ···

ଜହର—ନା, ନା, ଶୁଣ ଛାୟା ! ସାମାନ୍ୟ ଅନୁରୋଧ ଏଡ଼ି ତୁମକୁ ଆଘାତ ଦେବାର ମହା ଅପରାଧ ମୁଁ କରିବି ନାହିଁ (ଟିକିଏ ରହି) ମୋ ଜୀବନର ବ୍ୟକ୍ତିତ୍ୱ ବିଶେଷତ୍ୱ ପ୍ରାପ୍ୟ କିଛିନାହିଁ। ଶରଧନ ନିଃସଙ୍ଗ ସାଥିହୀନ ମୁଁ। ଶୈଶବରୁ ଅଗାଧ ଐଶ୍ୱର୍ଯ୍ୟ ଓ ବିଳାସର ସମ୍ଭୋଗ ଭିତରେ

ବୁଢ଼ବାପ୍ପ, ଭଗବାନଙ୍କର ଫେଣପରି ହାଲ୍କା ଭାବରେ ଭାସି ଯାଉଥିଲି, ଦୁନିଆର ଅତି ମାମୁଲି ସ୍ରୋତରେ । କଲେଜ ମାଡ଼ିବାର ତିନିବର୍ଷ ପରେ ବାପା ବୋଉଙ୍କର ଅକାଳ-ମୃତ୍ୟୁ ହୁଏ ।

ସ୍ୱପ୍ନା—ତାପରେ ? ଆପଣ ନିଶ୍ଚୟ ଖୁବ୍ ଭାଙ୍ଗି ପଡ଼ିଥିବେ ?

ଜହର—ଭାଙ୍ଗି ପଡ଼ିଥିଲି କିନ୍ତୁ ସେଇଠୁଁ ମୋର ଜୀବନର ଗତି ବଦଳିଗଲା ! ୧୯୪୨ ଅଗଷ୍ଟ ନଅ ତାରିଖ ମୋ ଜୀବନର ସ୍ମରଣୀୟ ଦିବସ । ଭାରତର ବିଭିନ୍ନ ପ୍ରଦେଶରୁ ଯେତେବେଳେ ନେତାମାନେ ଦଳଦଳ ହୋଇ ପଥର ପାଚେରି ଘେରା ମନ୍ଦିର ଭିତରକୁ ଗୃହଳନ୍ତି ସ୍ୱାଧୀନତାର ଲକ୍ଷ୍ମୀଙ୍କୁ ବନ୍ଦାଇ ଆଣିବାକୁ. ଠିକ୍ ସେଇ ଶୁଭ ମୁହୂର୍ତ୍ତରେ କଲେଜର ମିଲ୍‌ଟନ୍, ବାଇରନଙ୍କୁ ଛାଡ଼ି ଅନାଗତ ପ୍ରିୟାର ମଧୁସ୍ୱପ୍ନକୁ ଭାଙ୍ଗିଦେଇ ମୁଁ ଛୁଟିଲି ତାଙ୍କରି ପଛରେ ଝଡ଼ର ବତାସ ପରି, ପାଗଳ ହୋଇ ମୁଁ ଲକ୍ଷହାର ବେଢ଼ିପିଛ ଅନ୍ଧାରୀ ଗୁହା ଭିତରେ ଗୁରୁବ ଖାଇ ମଧ୍ୟ ମୋର ବିଦ୍ରୋହୀ ମନ ଚିତ୍କାର କରିଉଠିଲା—"ବନ୍ଦେ ମାତରଂ" "ଇନ୍‌କିଲବ ଜିନ୍ଦାବାଦ" (ପାଗଳପରି ଚିତ୍କାର କରିଉଠିଲେ)

ସ୍ୱପ୍ନା—(ଜଠିପଡ଼ିଲା ଅଭିନାଦ କରି) ଜହର ବାବୁ ! ଆପଣ ନିତାନ୍ତ ଉତ୍ତେଜିତ—

ଜହର—(ସହଜ ଗଳାରେ) ଶୁଣ ଆଅ ସ୍ୱପ୍ନା ! ପରେ ପରେ ଘୋଟି ଆସିଲା ଦେଶବ୍ୟାପି ଅମା-ଅନ୍ଧକାର । ଆଜି ସେଇ ଅନ୍ଧକାର ଭିତରେ ଝଡ଼ ବେଗରେ ଉଭେଇ ଗଲେ ନେତାଜୀ ସୁଭାଷଚନ୍ଦ୍ର, ଦେଶ ଛାଡ଼ି ବାହାର ପାରିହୋଇ ।

ବ୍ରିଟିଶ୍ ରାଜନୈତିକ ଗଗନରେ ଧୂମକେତୁ ଦେଖାଦେଲା, ପ୍ରଳୟ ଆସିଲା । ବ୍ରିଟେନର କର୍ମକର୍ତ୍ତାମାନେ ପ୍ରମାଦ ଗଣିବାକୁ ଲାଗିଲେ । ସବୁ ପୃଥିବୀ ଉଦ୍‌ବନ୍ଧ ହୋଇ ଗୁହାଁରିଥିଲା, ଭାରତର ଭାଗ୍ୟପରୀକ୍ଷାର ଫଳ ଦେଖିବାକୁ । ତା'ପରେ କାଣ ଛାପ୍ସା—ତାପରେ କଣ ହେଲା କାଣ ଛାପ୍ସା ! ( କ୍ଳାନ୍ତ ଓ ଅବସନ୍ନ ହୋଇ ତାଙ୍କର ବାକ୍ୟରୁଦ୍ଧ ହେଲା )

ଛାପ୍ସା—ଜହରବାବୁ—

ଜହର— ତା ପରେ ନାଜି ଅତ୍ୟାଗ୍ରହର ଧ୍ୱଂସକାରୀ ଲକ୍ଷକୋଟି ପ୍ରାଣରେ ଅହୂତି ନେଇ ପୃଥିବୀର ସେହି ଝଡ଼ ଲିଭିଗଲା । ନେତାମାନେ ଖଲାସ ହେଲେ । ଗାନ୍ଧିଜୀ ହରିଜନ ପଲ୍ଲୀରେ ବସି ପ୍ରାର୍ଥନା କଲେ, ହେ ଈଶ୍ୱର, ମାଙ୍କୁ ମୋର ମୁକ୍ତ କର । ମୁଁ ଜେଲରୁ ଫେରିଆସିଲି । ଦେଶପାଇଁ ଯେତିକି ମୋର କର୍ତ୍ତବ୍ୟ ତାହାହିଁ କରୁଛି ମାତ୍ର । ଆଜି ଦେଶର ଏଇ ମହାବିପ୍ଳବୀ କାଳରେ ଯେଉଁଭଳି ସମାଧାନ ଅମର ଦରକାର, ସେତିକି ଦେଶବାସୀଙ୍କି ବୁଝେଇବା ମୋର ଲକ୍ଷ୍ୟ ।

ଛାପ୍ସା— ଜହର ବାବୁ ! ଅପଣଙ୍କର ଦେବ ପ୍ରତିଭା ଅଛି । ରଙ୍ଗମଞ୍ଚରେ ଅପଣଙ୍କର ଏଇଭଳି ନାଟକ ଦେଖିଲେ ଦର୍ଶକମାନେ ପାଗଳ ହୋଇଯିବେ । ଅଭିନୟ ଗୌରବମଣ୍ଡିତ ହେବ ।

ଜହର—ଗୌରବମଣ୍ଡିତ କରିବେ ମୋର ପ୍ରେସର କର୍ମଗୁରୁମାନେ । ମୋର ସହକାରୀ ନିଷ୍ପେଷିତର ଦଳ—ଅତ୍ୟାଗ୍ରହୀର ଦଳ ।

ଦେବ—( ସହସା ପ୍ରବେଶକରି ) ଅଜ ସେଇ ନାଟକକୁ ବେଶୀ ଗୌରବଜ୍ଜ୍ୱଳ କରିବ ମୋର direction ! ( ସିନେମା ଢାଇଦାରେ ନମସ୍କାର କରି ) ଯେହେତୁ ତିନି ଭିନ୍ନବର୍ଷର ଅଭିଜ୍ଞତା ନେଇ ମୁଁ ଫେରିଛି ବେଙ୍ଗଲ ଫିଲ୍ମ ଷ୍ଟୁଡ଼ିଓରୁ । Good morning Miss, ମାନେ ମିସ୍ ଯ୍ଯୋସ୍ନାଦେବୀ । ଶୁଣି ଅଶ୍ଚର୍ଯ୍ୟ ହେବେ ସେ ଦିନ Chemistry ବନ୍ଧୁଭିତରୁ ଅପଣାଙ୍କର ନାଁର ସନ୍ଧାନ ପାଇଥିଲି, Thank God very well as he likes.

ଯ୍ଯୋସ୍ନା—ଖୁବ୍ ବାହାଦୁରୀ କରିଚନ୍ତି । ଶ୍ରୀମାନ୍ ଅଭ୍ଯାଗତଙ୍କର ଅସିବାର କାରଣ ?

ଦେବ—ଅବଧୂତ ନୁହେଁ । ମୋ ନାଁ ଦେବକୁମାର, ଦେବକୁମାର ।

ଯ୍ଯୋସ୍ନା—Nasty…brute ( ଉଠି ଠିଆହେଲେ ) ମୁଁ ଅଜି ଅସୁଛି ଜହର ବାବୁ ! ଅନ୍ୟଦିନ ଅସି ଅପଣାଙ୍କ ନାଟକଖଣ୍ଡି ପଢ଼ିବି । ନମସ୍କାର ( ପ୍ରସ୍ଥାନ )

ଦେବ—ବସନ୍ତୁ ନା, ଏଁ ସତକୁ ସତ ଚାଲିଗଲେ ? Oh, oh, gone, she is gone, gone with the wind and gone for ever.

ଜହର—ଦେବକୁମାର, ସରୋଜର ଖବର କଣ ? ଭଲ ଅଛି ତ ?

ଦେବ—ଭଲ ଅଛି Sir, ସାଙ୍ଘାତିକ ଭଲ ଅଛି, ଭୀଷଣ ଭଲ ଅଛି । ଏମିତି ଅଶିକ୍ଷିତ ବର୍ବର ପଲ୍ଲୀରେ ତାଙ୍କର ଘର ? ଓଃ, ଇଂରେଜି ଶବ୍ଦଗୁଡ଼ାକ ପର୍ଯ୍ୟନ୍ତ ଭୁଲିଯିବାକୁ ପଡ଼ିଲା ସେଠି । ଖାସା ଯାଗା ଜହର ବାବୁ ! ମାନେ, ଅପଣ ଗଲେଇ ମ୍ୟାଲେରିଅରେ ଅପଣଙ୍କର ମୃତ୍ୟୁ ହେବ ।

ଜହର—ସେଥିପାଇଁ ତୁମେ ଗୃହଲୁଅସିଲ ନା କଣ ?

ଦେବ—ହଁ Sir. ସେ ଅସାମାନ୍ୟ ଗ୍ରାମର ମହାମାନ୍ୟ ଅତିଥି ହେଇ ତିଷ୍ଠି ପାରିଲି ନାହିଁ ମୁଁ । ଷ୍ଟୁଡ଼ିଓର କଳ୍ପନା ନେଇ ଯାଇଥିଲି ବାହୁ ଫେରିଲି ଅପେରାର କରୁଣ ସ୍ମୃତି ନେଇ ।

ଜହର—ଅ-ପେ-ରା ?

ଦେବ—ହଁ ସିସ୍ଟର, ଅପେରା—ଭାରତବର୍ଷର ବୁଢ଼ା ଫିମେଲ ସେଇ କରେ । 'ପ୍ରିୟେ', 'ପ୍ରାଣେଶ୍ୱର'ର ଅଦ୍ଭୁତ ଡାଇଲଗ୍ । ଛି ଛି, ଏମିତି ଜଘନ୍ୟ କଳା ଓଡ଼ିଶାର ! ପ୍ରାଣାନ୍ତକ ହେଇ ପଳେଇ ଅସିଲି ।

ଜହର—ଓଡ଼ିଶାର ପ୍ରକୃତି ଯେବେ ଏତେ ଜଘନ୍ୟ, ତୁମେ ସେ ଦିଗର ପଲ୍ଲୀରେ କାହିଁକି ପାଦଧୂଳି ଦେଇଥିଲ ଶୁଣେ ?

ଦେବ—ଯାଇଥିଲି ଗୋଟାଏ ଯାଗା ପସନ୍ଦ କରିବାକୁ । ଓଡ଼ିଶାରେ ଫିଲ୍ମ ଷ୍ଟୁଡ଼ିଓ ଖୋଲିବା ତ ଦୂରର କଥା—ଗୋଟାଏ ଷ୍ଟୁଡ଼ିଓ କରାଯାଇପାରିବ, ଏମିତି ଜମି ବାଟାଏ ମଧ୍ୟ ଖୋଜି ପାଇଲି ନାହିଁ । କବିମାନେ କହନ୍ତି, 'ପଲ୍ଲୀରାଜ୍ୟର ଶୋଭା ଅସୀମ', ଅପୁରନ୍ତ । ବୃକ୍ଷ ବଲ୍ଲରୀରେ କୋଇଲିର ଡାକ, ହେନା, ଚମ୍ପାଅନାର ସୁଗନ୍ଧ—ହାୟ, ହାୟ—ମୁଁ ତାର ଗନ୍ଧ ବର୍ଣ୍ଣ ସୁଦ୍ଧା ଦେଖିଲି ନାହିଁ । କୁଞ୍ଜର ଶ୍ୟାମଳିମା ଭିତରେ ମଗ୍ନ-ହଇଜର ରାଣୀ ତେଣା ମେଲିକ ବସିନାହିଁ ବରଂ ବୃକ୍ଷ ଶ୍ମଶାନ ଭିତରେ କେତେଗୁଡ଼ାଏ ଶାଗୁଣା ପକ୍ଷ ମେଲିଇ ବସିଚନ୍ତି । ସେସବୁ nasty ଯାଗାରେ Studio ଖୋଲିବା କେବଳ ପ୍ରେତାତ୍ମାର ସ୍ୱପ୍ନ । ହାୟ—ହାୟ—ମାନେ ସତ୍ୟଇ ଜହର ବାବୁ, ବାଙ୍ଗ ଏଇ ଦେଶ !

ଜହର—( ବହି ପଢୁ ପଢୁ ଅନ୍ୟମନସ୍କ ଭାବେ ପଚାରିଲେ ) ହୁଁ, ତା'ପର ?

ଦେବ—( ଗପି ଚାଲିଛି ) ଜୀବନର ତିନି ତିନିଟା ବର୍ଷ କଟେଇ ଆସିଲି ଏମିତି ଯାଗାରେ ଯୋଉଠି ଖାଲି ଭାବ୍ୟମୟ ଜୀବନ । ପରିବେଶକ, ନିର୍ଦ୍ଦେଶକ, ପରିଚାଳକ, ଲେଖକମାନଙ୍କର ଯେଉଁଠି ଫିଲସଫି, ସାଇକୋଲଜି, ଫିଜିଓଲଜି ନେଇ ଭିଡ଼ା ଓଟରି । Thank God very well as He likes—ମାନେ ରକ୍ଷା ହେଉଛି । ଓଡ଼ିଶାର ରଜା ମହାରଜା-ମାନେ Studio ଦଗରେ ମନ ଦେଇ ନାହାନ୍ତି ନ ହେଲେ କ୍ୟାମେରାମ୍ୟାନ୍‌ର ଫଟୋଗୁଡ଼ାକ ଆହୁରିମଧ୍ୟ ଖରାପ ହୁଅନ୍ତା ।

ଜହର—( ହସି ) ସତେ ନା କଣ ?

ଦେବ—Yes sir, ଓଡ଼ିଶାର ତ ଦୁର୍ଭାଗ୍ୟ, ଗୋଟେ ଭଲ actress ହେଇ ଛୁଡ଼ା ହବ ଏମିତି ଝିଅଟିଏ ସୁଦ୍ଧା ନାହିଁ । ଅବଶ୍ୟ ଅଳ୍ପ କେତେକଙ୍କୁ ବାଦ ଦେଲେ । ଷ୍ଟାଇଲ୍ ନାହିଁ, ଫେସନ୍ ନାହିଁ, ଡିସିପ୍ଲିନ୍ ନାହିଁ, କଲ୍ଚର ନାହିଁ ଏମାନଙ୍କର । ଅଥଚ ମୁଁ ନିଜେ ଦେଖିଛି Studioରେ ଷ୍ଟାଇଲ୍ ବଜାୟ ରଖିବାକୁ ଯାଇ ଜଣଜଣଙ୍କର ଖାଲି ସିଗାରେଟରେ କେତେ ଖର୍ଚ୍ଚ ହୁଏ । ଅଜସ୍ର ଅଜସ୍ର । ଜହରବାବୁ ! ଆପଣଙ୍କର ଡ୍ରାମା ଶେଷ କରନ୍ତୁ । ମୁଁ ତାକୁ ନିଜର ଡିରେକ୍‌ସନରେ ସର୍ବଶ୍ରେଷ୍ଠ ନାଟକରୂପେ ତୋଳିବି । ଅବଶ୍ୟ ଛାୟାଦେବୀ ହେବେ ଆପଣଙ୍କର Heroine ହୁଅନ୍ତୁ ।

ଜହର—ତୁମେ ଯ୍ମୃତୀକୁ ଜାଣ ନା କଣ ଦେବକୁମାର ?

ଦେବ—ଜାଣେ ମିଷ୍ଟର । ମାନେ ସେଇଦିନ ପ୍ରଥମ ଦେଖା ହୋଇଥିଲା ଏଇଠି, ଠିକ୍ ଏଇ ଯାଗାରେ । ତା’ପରେ ମୁଁ ଶ୍ରୀମତୀଙ୍କର ଖବର ନେଇଛି ପ୍ରତି ବଗିଚେ, ମଟରରେ, ପାର୍କରେ, ହୋଟେଲରେ, ଟାଉନ୍ ବସରେ ଠିକ୍ ପୋଲିସ ଯେମିତି ପଳାୟିତ କଏଦୀର ଖବର ନିଏ । ହେଲେ ହାୟ—ହାୟ, She is gone and gone for ever.

ଜହର—ଅଚ୍ଛା, ଡ୍ରାମା କଥା ପରେ ହବ । ତୁମେ ଅଗେ ସବୁଜର ଖବର କଣ କୁହ । ତାର ଫଣ୍ଡ ଭାମ ସ୍ୱିଡମଡ ଅଗେଇ ଚାଲିଚି ତ ?

ଦେବ—ସେ ଅଗେଇବାର ଚେଷ୍ଟା କଲାବେଳେ, ଗ୍ରାମର କେତୋଟି ମହା-ଧୁରନ୍ଧର ଶକୁନି ତାଙ୍କୁ ପଛେଇ ଦେବାର ସ୍ୱିଡମଡ ଯତ୍ନ କରୁଚନ୍ତି, ମାନେ ସ୍ୱିଡମଡ backward march. ଅରେ ମିଷ୍ଟର backward march କଣ downward march କହିଲେ ବରଂ ଚଳିବ । ଏଥିରେ କି ଦେଶ-ସେବା ଚଳେ ଜହରବାବୁ ? ନିତାନ୍ତ hopeless ମଫସଲ ଗାଁ—ଯୋଉଠି ଶିକ୍ଷା, ଦୀକ୍ଷା, ସଭ୍ୟତା ପ୍ରଭୃତି ଜୀବନର ଶ୍ରେଷ୍ଠ ସମ୍ପତ୍ତିଗୁଡ଼ିକ ବାଲି ପଡ଼ିବ ବିଷାକ୍ତ କୁସଂସ୍କାର ଭିତରେ । ହାୟ—ହାୟ…କେତୋଟି ଦିନର ତିକ୍ତ ଅନୁଭୂତି ମୋର ସ୍ମୃତିପଥରେ ଆଜୀବନ ଜଳ ଜଳ କରୁଥିବ ।

ଜହର—ତା ସତ ଦେବକୁମାର ! ନିତାନ୍ତ ଜଘନ୍ୟ, ନୀଚ ମନୋବୃତ୍ତି ନେଇ ମଫସଲର ହାଓ୍ୱା ବିଷାକ୍ତ ହୋଇଉଠିଛି । ଘରେ ଘରେ ଅଭାବ, ଅନାଟନ, ଦାରିଦ୍ର୍ୟର ରୁଦ୍ର ଅଭିଶାପ;

ଅଥଚ ଭୁଲ ଭୁଲ ଭିତରେ କଳି ଲଗାଇ ମହାଭ୍ରମର ସୃଷ୍ଟି କରିବା ସେଠିକାର ଅଶିକ୍ଷିତ ଶକୁନିମାନଙ୍କର ବ୍ୟବସାୟ ।

ଦେବ—କିନ୍ତୁ ଦେଶରେତ War grade ନେତାଙ୍କର ଅଭାବ ନାହିଁ ! ଗଳା ଫଟାଇ ହଲ୍ଲା କରିବାକୁ କେତୋଟି ଅପନ୍ତୁ ଶକୁନି ମଧ୍ୟ ଅଛନ୍ତି, ଯେଉଁମାନେ କେବଳ ଅପରର ସ୍ୱାର୍ଥ ଠିକଣା ନେଇ ଜାଣନ୍ତି, କିନ୍ତୁ ଦେଇ ପାରନ୍ତି ନାହିଁ । ହୋ ହୋ କର କିଛି ଲାଭ ଉଠେଇବା ସେମାନଙ୍କର ନୀତି ।

ସୁଧାଂଶୁ—(ଅସି ବସିଲେ ନମସ୍କାର କରି) ଯଥା ଏଇ କମ୍ୟୁନିଷ୍ଟ । ସେମାନେ ଉଠେଇ ଦେଇ ପାରନ୍ତି, କସ୍ରତ୍ ଦେଇ ପାରନ୍ତି, ନୀତି ବଦଳେଇବା ହେଉଛି ସେମାନଙ୍କର ପ୍ରଧାନ ନୀତି ।

ଜହର—କମ୍ୟୁନିଷ୍ଟ ?

ସୁଧାଂଶୁ—ହଁ ଜହର ବାବୁ । Communism—a mixture of everything and nothing ! ଅଜବ idea ସେମାନଙ୍କର । ଦାଅ ହାତୁଡ଼ି ଧରି ସେମାନେ ପୃଥିବୀର ଉଚ୍ଚ ଖାଲ ସବୁ ସମାନ କରିଦବାକୁ ବସିଚନ୍ତି, ହୋପଲେସ୍ ସର୍ବହରାର ଦଳ । ମୋର ନୂଆ ପ୍ରେସ ଆରମ୍ଭ ନ ହଉଣୁ strikeର ସୂତ୍ରପାତ ହେଇଚି ।

ଜହର—ସୁଧାଂଶୁ ବାବୁ ! ସାମ୍ୟବାଦ ନୀତିଟାକୁ ଉଡ଼େଇ ଦେଲେ ଚଳିବ ନାହିଁ । ଗାନ୍ଧିଜୀ ମଧ୍ୟ ତାର ଅସ୍ତିତ୍ୱ ଉପଲବ୍ଧି କରିଚନ୍ତି । ଅବଶ୍ୟ ବ୍ୟକ୍ତିଗତ ଦୋଷାଦୋଷ ନେଇ ଆପଣ ଯେବେ ସମାଲୋଚନା କରନ୍ତି, ତା'ହେଲେ ମୋର ଯୁକ୍ତି କରିବାର କିଛି ନାହିଁ ।

ଦେବ—ଆପଣ ଜାଣନ୍ତି ନାହିଁ ଜହର ବାବୁ, ଦେଶରେ ସେମିତି ବାଉନ ଦଳ ସୃଷ୍ଟି ହେଇ ଆମର ଅଣ୍ଡା ଏତେଦୂର ଶୋଚନୀୟ

ଅବସ୍ଥା । ସମସ୍ତେ ଯେବେ ଗୋଟାଏ ବାଟରେ ଚାଲିବାକୁ ଶିଖନ୍ତେ, ତା'ହେଲେ ସ୍ୱାଧୀନତା ହାସଲ କରିବାକୁ ଖୁବ୍ ବେଶୀ ଡେରି ଲାଗନ୍ତା ନାହିଁ ।

ସୁଧାଂଶୁ—ତା ଠିକ୍, ହେଲେ ଏମାନଙ୍କୁ ଏକାଠି କରାଇ ଆଗେଇ ଚାଲିବାର ବାଟ ନାହିଁ । ନିରପେକ୍ଷ ଭାବରେ ସମସ୍ତେ ଯେବେ ଜଣସ୍ୱାର୍ଥ ପାଇଁ ଆପଣାକୁ ଉତ୍ସର୍ଗ କରନ୍ତେ, ତେବେ ଦେଶର ଦୁର୍ଦ୍ଦଶା ଦୂର ଏତେ ଲମ୍ବି ପାରନ୍ତା; ମାତ୍ର—

ଜହର—ମାତ୍ର ପ୍ରକୃତ ବାଟ ଆମେ ଖୋଜି ପାଉନାହୁଁ । କେବଳ ନିଜ ଦୋଷରୁ ଆମ୍ଭେମାନେ ଆଜି ଏ ପୃଥିବୀର ଅନ୍ୟ ଜାତିମାନଙ୍କ ପଛରେ ଗୋଟାଏ ନିର୍ଜୀବ ଜଡ଼ ଜାତିପରି ବଞ୍ଚି ରହିଚୁଁ ।

ସୁଧାଂଶୁ—ଆପଣଙ୍କ ମୁହଁରୁ ଶୁଣିଲି ଆପଣ ସମାଧାନ ଚୋଲି ଉତ୍ତରରେ ଖଣ୍ଡିଏ ନାଟକ ଲେଖିବାକୁ ଆରମ୍ଭ କରିଛନ୍ତି ?

ଜହର—ଆରମ୍ଭ ନୁହେଁ, ଅନେକ ବାଟ ଆଗେଇ' ଗଲିଣି । ମୋର ଆଶା ସେଇ ନାଟକ ରଙ୍ଗମଞ୍ଚରେ ଅଭିନୀତ ହେଲା ପରେ ଲୋକେ ଅନ୍ତତଃ ବର୍ତ୍ତମାନ ସମୟରେ ସମାଧାନର ବାଟ ଖୋଜି ପାଇବେ ।

ଦେବ—ମୁଁ ଆଶା କରୁଛି, ମୋର Direction ପାଇଲେ ନାଟକର ଅଭିନୟ ଏକାବେଳକେ ଜୀବନ୍ତ ହୋଇଉଠିବ । କାରଣ ମୋ ନାଁ ପଛରେ ଅଛି Film Studioର ତିନି ତିନି ବର୍ଷର ଅଭିଜ୍ଞତା ।

ଜହର—ଧନ୍ୟବାଦ ! ତୁମର ଆଶା ସଫଳ ହଉ, ଦେବକୁମାର । ତୁମେ ବର୍ତ୍ତମାନ ଆସିପାର । ମୁଁ ସୁଧାଂଶୁବାବୁଙ୍କ ସାଙ୍ଗରେ ତାଙ୍କ ନୂଆ ପ୍ରେସ ସମ୍ପର୍କରେ କିଛି ଆଲୋଚନା କରିବି ।

ଦେବ—Thank you very well as you like. ( ପ୍ରସ୍ଥାନ )

ଜହର—ଆସନ୍ତୁ ସୁଧାଂଶୁ ବାବୁ ! ଫୋନ୍‌ରେ ଆପଣଙ୍କ ସାଙ୍ଗରେ କଥାବାର୍ତ୍ତା ହେଲା ପରେ ମୁଁ ଆପଣଙ୍କପାଇଁ ଏଇଠି ଅପେକ୍ଷା କରିଥିଲି ।

ସୁଧାଂଶୁ—( ହସି ) ଦେବକୁମାର ଜଣେ ଆପଣଙ୍କର ସମ୍ପର୍କୀୟ ?

ଜହର—ମୋର ବନ୍ଧୁ ବନ୍ଧୁ ସରୋଜର ସମ୍ପର୍କୀୟ ସେ । ସରୋଜର ଏକାନ୍ତ ଅନୁରୋଧରେ ମୁଁ ତାଙ୍କୁ ମୋର ସଂସ୍ଥାର ଅନୁଷ୍ଠାନରେ ସ୍ଥାନ ଦେଇଛି ( ହସିଲେ ) । ହଉ ଆପଣ ଆସନ୍ତୁ । (ସୁଧାଂଶୁଙ୍କୁ ନେଇ ସିଡ଼ିରେ ଉପରକୁ ଚାଲିଗଲେ)

---

## ଚତୁର୍ଥ ଦୃଶ୍ୟ

( ଘନଶ୍ୟାମଙ୍କ କୁଟୀର ସମ୍ମୁଖ—ସିନ୍ ଉଠିଲା ପରେ ପରେ ରାଧା ଓ ଇନ୍ଦୁ କଥାବାର୍ତ୍ତା କରୁ କରୁ ପ୍ରବେଶ କଲେ )

ଇନ୍ଦୁ—ସବୁବେଳେ କାହିଁକି ମନଟି ମାରିଦେଇ ଘରକଣରେ ବସିଥାଉ ମ ସଙ୍ଗାତ ? କେମିତିବାବୁ ଗୃହର କର ଗଳ୍ପଦାନୁ ତୁ ତ ମୋତେ କୋଉଠିକି ବାହାରୁ ନାହିଁ ? କଣ ଏମିତି ହେଲା ମ ତୋର ?

ରାଧା—କଣ କରିବ ସଙ୍ଗାତ ! ସବୁବେଳେ ତ ଘରଧନ୍ଦା, ଫୁରୁସତ୍ କାହିଁ ? ମଣିବାକୁ ତ ବେଳ ନାହିଁ ।

ଇନ୍ଦୁ—ମଲା ତୋର ଯୋଉ କଥା ! ପକ୍କା ଘରଣୀଟିଏ ହେଲୁଣି କି ମ ଏଥର ? ଭଗବାନ ପିଲାଛୁଆ ଗୋଟିଏ ଦୋଟିଏ ଦେଲେ ଆଉ ତ କିଛି ବାକି ରହିବ ନାହିଁ ଲୋ ।

ରାଧା—ଛି, ତତେ ଲାଜ ମାଡ଼ୁ ନାହିଁ ! କଣ ଗୁଡ଼େ କହୁଚୁ ମ !

ଇନ୍ଦୁ—ଜାଣିଛ ଲୋ ଭଉଣୀ, ମୁଁ ସବୁ ଜାଣିଛି । ଶଶୀବୋଉ ଖୁଡ଼ୀ ସବୁ କହୁଥିଲେ ତୋ ଶଶୁର କୁଆଡ଼େ ତୋ ହାତରେ ସବୁ ଘର ଦେଇଛନ୍ତି, ସତେ କଲୋ ସଙ୍ଗାତ ? (ମାବର ଦେଖି) ଭଲ ହେଲା । ଶାଶୁ ଶଶୁର ଦୁଇଟିଙ୍କି ନେଇ ଯେମିତି ଭଲରେ ଚଳିବୁ ସେଇଆ କର ଏଥର ।

ରାଧା—ନାହିଁ ଲୋ ସଙ୍ଗାତ ! ପରବଶ ଘରର ଝିଅ ମୁଁ । ମୋ କପାଳରେ ଏତେ ସୁଖ କାହିଁ ? ଭଗବାନ ନ କରନ୍ତୁ, ସେ ଅଧିକାର ମୋର ନ ହଉ । ଏଣିକରେ ମୁଁ ଖୁବ୍ ଭଲରେ ଅଛି ।

ଇନ୍ଦୁ—ସତେ ସଙ୍ଗାତ ! ମାଇକିନିଆ ଝିଅ ପ୍ରାଣୀକପାଳ । ତାର ଗୋଟେ ଅଧିକାର କଣ, ଭଲ ମନ୍ଦ କଣ ? ଯେମିତି ସେମିତି ଖାଇ ବସେଇ ଦେଲେ ସବୁ । ହିଁ, ଘରକୁ ଗାଁକୁ କଣ ଖଟି ଆସିଲାଣି ନା, ନାହିଁ ?

ରାଧା—ହିଁ, ଖଟି ଆସିଥିଲା । ସେ ଏଇନେ କଲିକତାରେ ଅଛନ୍ତି । ନାଥଭାଇ ପାଖେ ପାଖେ ଅଛି ।

ଇନ୍ଦୁ—ଏଁ କଲିକତା ଚାଲିକି ଗଲେ ମ ? ଅନ୍ୟ କୋଉଠି କଣ ଚାକିରି ମିଳିଲା ନାହିଁ ? ଶୁଣିଥିଲି କଲିକତାରେ କୁଆଡ଼େ ହିନ୍ଦୁ ମୁସଲମାନ ଲଢ଼େଇ ଲାଗିଛି । ବହୁତ ଲୋକ ମଲେଣି, ଜାପାନୀ ପଳେଣି ସବୁ ଆସିବେ ନା କଣ !

ରାଧା—କେଜାଣି ଲୋ ମା ! ମୁଁ କିଛି ଜାଣିନାହିଁ ।

ଇନ୍ଦୁ—କିଛି ଜାଣିନାହିଁ ? ତମ ଘରେ ଏମିତି କଣ ଅଭାବ ଯେ ସେ ଏ ସମୟରେ ଚାକିରି କରିବାକୁ ଗଲେ ? ମତେ ଜଣା ଯାଉଛି ବୁଦ୍ଧିକର ସବୁ ମାଇକିନି କଣ !

ରାଧା—ମରଦ ପିଲା, ଘରେ ସେମିତ ବସିବା ତ ଠିକ୍ ନୁହେଁ । କିନ୍ତୁ
ନା କିଛି କରିବା ଦରକାର । ବାପାଙ୍କ କଥାରେ ସେ
ଯାଉଚନ୍ତି, ଗୋଳମାଳ ଦେଖିଲେ ପଳେଇ ଆସିବେ ।

ଇନ୍ଦୁ—ହଉ ତୁ ଥା; ମୁଁ ଯାଉଚ । ଏତେ ବେଳଯାଏ ତୋ ପାଖରେ
ବସି ଗପିଲଣି, ଏଣେ ସବୁକାମ ବାକି ପଡ଼ିଥିବ । ସେ
ଯୋଉ ସାନ ବଡ଼ଠାକୁ, ତା ଅବଗୁଣ କହିଲେ ସରିବ ନେଇଁ ।
ବାପ ପର ଯୋଉ କଥାକୁ ରାହା ଧରିଥିବ ସେଇଆ ।

ରାଧା—ହଉ, ତୁ ଯା । ବେଳ ପାଇଲେ ମଝିରେ ମଝିରେ ଆସୁଥିବୁ;
ଏକୁଟିଆ ଘରକଣରେ ବସିବାକୁ ଭଲ ଲାଗେ ନାହିଁ ।

ଇନ୍ଦୁ—ମୁଁ ତ ଆସୁଚ । ତୁ ଦିନେ ଆମ ଘର ଆଡ଼କୁ ଯାଆନୁ ନାଇଁ ?

ରାଧା—ମୁଁ କୁଆଡ଼େ ଯିବି ଲୋ ? ଗଲେ ଅଉ ଜୀବନ ବଚିବ ?
ତୁମ୍ଭକୁ କେତେ ତ କେତେ କଥା ମୋ ନାଁରେ ଉଠଉଚନ୍ତି ।

ଇନ୍ଦୁ—ପୋଡ଼ାମୁହାଁଙ୍କ ମୁହଁରେ ନିଆଁ, ଏ ସାଇ ମାଇପେ ତ
କମ୍ ନୁହନ୍ତି, ପର ଘର ଛିଦ୍ର ଖୋଜି ମିଛ ସତ କରି
ନ ଗପିଲେ ତାଙ୍କର ଭାତ କଣି ହଜମ ହୁଏ ! ମରଣ
ହଉନେଇଁ ସବାଖାଇଙ୍କି ? ହଉ ହେଲା ତ, ଯାଉଚ । (ପ୍ରସ୍ଥାନ)

ରାଧା—( ଇନ୍ଦୁ ଚାଲି ଗଲେ ସେଇଆଡ଼କୁ ଚାହିଁ ଦୀର୍ଘ ନିଃଶ୍ୱାସ ପକେଇ
ଫେରିଲା )

ପିଅନ—( ଝରକା ପାଖରେ ପ୍ରବେଶ କରେ ) ଆଲେ, ତୋ ନାଁରେ କିଏ
କଅଣ କହୁଚ କି ଲୋ ? ମାଇପିଟା ଯାଗରେ ମିଛସତ କରି
ଏତେଗୁଡ଼ାଏ କଥା ମୋ ନାଁରେ ଗପିଲା ? ତତେ ଟିକିଏ
ପାପ ଛୁଇଁଲା ନାଇଁ ? ସେଥିରେ ଫେର ବୁଢ଼ା ଶଶୁରଟା
ନାଁରେ ଦୋଷ ଦେଲୁ···ପୁଅ ସାଙ୍ଗରେ କଳିଆ ଲଗେଇ
ଗୃହକଳହ ପଟେଇଚ । ଛି,ଛି, ମାଇକିନିଅ ହୋଇ ହେଇ
ତୁ ଏଡ଼େ ଥୋବରା ଲୋ ?

ରାଧା—ମୁଁ ତ ତାଙ୍କ ଆଗରେ କିଛି କହିନେଇଁ ।

ପିଅର—ସବୁ ଶୁଣିଛ ନା । ତୋ ମନରେ ମୁଁ ବାହାରେ ବାବଗଣ ଭୋଳୁଥିଲି ବୋଲି ମୋ ନାଁରେ ପଛଆଡ଼େ ବାପାଙ୍କ ଛନ୍ଥୁଥିଲ ? ହଜ ଅଛ ଶଶୁର ଗୋସେଇଁ ଅସନ୍ତୁ, ମୁଁ ତାଙ୍କର ଅଗରେ କହୁଚ ।—ଭୂଅଶ୍ବଣୀଟା—ଲାଜ ସରମ ଟିକିଏ ନାହିଁ ! ଅଗଣା ମଝିରେ ଛୁଡ଼ାହେଇ ଏତେ ଫିସାଦିଅ ଗପୁଚୁ !

ରାଧା—କହିଲେ କହିବ, ମୋର ଅଜ ବଳ କଣ ? ସବୁଦିନେ ତ ଟାଳ ଖାଉଚ, ଗଞ୍ଜଣା ସହୁଚ । ଏ ତ ନୂଆ କଥା ନୁହେଁ ।

ପିଅର—ତେବେକେ ତତେ ମାଡ଼ ପଡ଼ୁ ନାହିଁ ଲୋ, ମୋ ଅଗରେ ଖଣ୍ଡୁ ଭଳିଅ ଛୁଡ଼ା ହେଇ ମୁହିଁ ହଲେଇ କଥା କହୁଚୁ ? 'ଛୁ ବେ ଛତ୍ରୁ ମେଘ ବରଷିଲେ କେତେ ଫୁଟନ୍ତୁ' । ଅହ୍ନର ଯେବେ ସେମିତ ବଡ ଘରୁ ଅସିଥାନ୍ତୁ—ତା' ହେଲେ ତ—

( ଘନଶ୍ୟାମଙ୍କୁ ଅସିବାର ଦେଖି ରାଧା ଗୁଲିଗଲା )

ଘନ—ତା'ହେଲେ ଠିଅପାଲ୍ କଣ ଅଛ ଏତିକିବେଳକୁ ଅବମ୍ଭ ହେଲା ଜତବୋଢ଼ ? ନାଃ, ତୁମେମାନେ ଅଉ ଏ ଘରେ ରଖେଇ ଦବ ନାହିଁ ଦେଖୁଚ ।

ପିଅର—କାହିଁକି ? ତୁମ ମନରେ ଯଦି ଏତେ କଥା ଅଛି—ମୁଁ ଭୁଅଡେ ଗୁଲି ଯାଉଚ, ଏ ଘରେ ମୋର ଏତିକି ।

ଘନ—କେହି ଲ ମଣିଷ ନୁହଁ, ସମସ୍ତେ ଗୋରୁ । କଣ ହେଇଚ କହ ତ ?

ପିଅର—କିଛି ହେଇନ—ଠିଅପାଲ୍ ଲଟିଚ, ଶୁଣିବ ? ଏ ପୋଡ଼ା-ମୂହିଁ ପେଟ ଭିତରେ ଏତେ କଥା—ନାହିଁ ନାହିଁ ମୁଁ କହିବ ନେଇଁ ।'କହିବ ନାହିଁ ନା କହିଲେ ଏ ଘରେ ରହିବ ନାହିଁ'!

ତୁମର ତ ଲୋକ କଥାରେ ବିଶ୍ୱାସ ନାହିଁ । ଏଣେ ଡକୁଣୀ ଘର ଝିଅ ସାଇ ମାଇପଙ୍କ ଆଗରେ ତୁମ ନାଁରେ ବାରକଥା ନଗେଇ କହୁଛି । ତୁମେ କୁଆଡ଼େ ଜାତି ସାଙ୍ଗରେ ଲଢ଼େଇ କରି ତାଙ୍କୁ ଗୃହର କରିବାକୁ କାଲିମାଟି ପଠେଇଛ ? କଲିକତାରେ କଣ କଳିଗୋଳ, ନାଗିଛ ଯେ, ଏଇକ୍ଷଣିକା ସମସ୍ତେ ତୁମକୁ ଛି ଛାକର କରୁଛନ୍ତି ।

ଘନ—ହିଁ ବୋଉ, ତ କହୁଛ, ଘରୁ କଣ ତଡ଼ିଦେବି ଜାତିବୋଲ ? ଭଲ ହଉ, ମନ୍ଦ ହଉ, ମତେ ସବୁ ସହିବାକୁ ପଡ଼ିବ । ଜାଣିଶୁଣି ମୁଁ ଜାତିର ବାହାଘର ସେଠି କରେଇଛି । ସିଏ ମୋର ନିଜର ଦୋଷ । ଏମିତି ହେଇ ହେଇ ମୋର ଏଡ଼େ ବଡ଼ ଘର ନାରଖାର ହେଇଯିବ—ଏ କଥା ମୁଁ ସ୍ୱପ୍ନରେ ଭାବି ନ ଥିଲି । ଏବେ ଭୋଗିବାକୁ ପଡ଼ିଲା । ସବୁ-ବେଳେ ତ ତାଣ୍ଡବ ଲୀଳା ଲାଗିଛି ତୁମ ବାପୁଙ୍କ ଭିତରେ । (ବଡ଼ପାଟି କରି ଭିତରକୁ ଶୁଣେଇ) ବୋଉ ! କହି କହି ବୁଝେଇ ବୁଝେଇ ଥକିଲି । ତୁମମାନଙ୍କ ମତିଗତି ବଦଳିଲା ନାହିଁ । ଏଣିକି ଧର୍ମକୁ ଚଳିବାକୁ ଦେଇ ମୋ କାମ ମୁଁ କରିଯିବି । ପଛରେ ଚେତିବ, ଦେଖିବ ।

ପିଅର—ନାହିଁ, ମୁଁ ବି ଏଥର ମୋ କାମ କରିବି, ଏ ଘର ରହିଲେ କେତେ, ନିଆଁ ଲାଗି ପୋଡ଼ିଗଲେ କେତେ ! ମୋର କଣ ଅଛି ?

ଘନ—ହିଁ, ତୁମର କଣ ଅଛି ଜାତିବୋଲ ! ତୁମେଇ ଆସିଥିଲ ମୋ ଘରେ ନିଆଁ ଲଗେଇ ଘରଟାକୁ ଜାଳି ପୋଡ଼ି ଦବାକୁ । ନିଆଁ ତ ଲଗେଇ ଦେଇଛ । ବେଶ୍ ହୁ ହୁ ହେଇ ଜଳୁଛି । ସେ ନିଆଁ ଆଉ ଲିଭିବ ନାହିଁ । ସମସ୍ତିଙ୍କି ଜାଳିପୋଡ଼ି

ମାରିବ । ଏବେ ବର୍ଣ୍ଣର [illegible]ରେ ତୁମେମାନେ ଯୋଉ ଅଶାନ୍ତ ତାଙ୍କର [illegible]ପରେ ତୁମେମାନେ ସମସ୍ତେ ପୋଡ଼ି ହୋଇ ମରିବ । ( ଉର୍ଦ୍ଧ୍ୱ ବାହୁ ଚାଲିଗଲେ )

---

## ପଞ୍ଚମ ଦୃଶ୍ୟ

( ଅମଳ ଚୌଧୁରୀଙ୍କର ସୁସଜ୍ଜିତ ଡ୍ରଇଂରୁମ୍ । ମିସ୍ ଜଠିସ-ବେଲଙ୍କୁ ଦେଖାଇଲ ସୁଧାଂଶୁ ଓ ଦେବକୁମାର କୌଣସି ବିଷୟରେ ଗୋପନ ପରାମର୍ଶ କରୁଛନ୍ତି )

ସୁଧାଂଶୁ—ଭ୍ରମର କଥା ଉପରେ ଆମେମାନେ କେତେଦୂର ନିର୍ଭର କରୁଚୁ ବୁଝୁଚ ତ ଦେବକୁମାର ?

ଦେବ—ଆପଣମାନେ ନିଶ୍ଚିନ୍ତ ରହନ୍ତୁ ସୁଧାଂଶୁବାବୁ । ଦେବକୁମାର ଯୋଉ କାମରେ ହାତ ଦିଏ, ତାର Finishing tauch ନ ହୋଇ ଛାଡ଼େନା । ତା' ଛଡ଼ା ଅଯାଚିତଭାବରେ ଆପଣ-ମାନେ ମତେ ଯେତେଦୂର ସାହାଯ୍ୟ କରିଚନ୍ତି ସେ କଥା ଭୁଲିଯିବା ନିଶ୍ଚୟ ଜଘନ୍ୟ ଅକୃତଜ୍ଞତା ହବ Mr. Mohanty.

ସୁଧାଂଶୁ—ଜହରର କାର୍ଯ୍ୟକଳାପ ବିରୁଦ୍ଧରେ ତୁମକୁ ଯଥେଷ୍ଟ ପ୍ରମାଣ ସଂଗ୍ରହ କରିବାକୁ ହବ । ଆଉ ଦରକାର ପଡ଼ିଲେ ଜନସାଧାରଣଙ୍କ ଆଗରେ ତୁମେଇ ଦବ ତାର ସାକ୍ଷ୍ୟ ।

ଦେବ—ଏତେ ସମୟ ଧରି ଖାଁଯୁସାହେବଙ୍କ ଡ୍ରଇଂରୁମ୍‌ରେ ଯୋଉ ପରାମର୍ଶ ହୋଇଯାଇଚି, ତାର ପୁନରାବୃତ୍ତି କରିବାର ଦରକାର ନାହିଁ Mr. Mohanty ସବୁ କଥା ମୋର ଠିକ୍ ସ୍ମରଣ ରହିବ । ଜହର ବାବୁଙ୍କ ବିରୁଦ୍ଧରେ ଆପଣମାନଙ୍କୁ

ସାହାଯ୍ୟ କରିପାରିଲେ Mr. Choudhury ମଠେ ଅନେକ ଟଙ୍କା ଦେବେ, ସେ ପ୍ରତିଶ୍ରୁତି ମଧ୍ୟ ଦିଆଯାଇଛି, Thank you very well as you like.

ଚୌଧୁରୀ—( ଚେକ୍ ନେଇ ପ୍ରବେଶ କଲେ ) କେବଳ ସେତିକି ନୁହେଁ, ଏତକ୍ଷଣରେ Film studio ଗୋଟାଏ ଆରମ୍ଭ କରି ସେଥିରେ ତୁମକୁ Managing Director କରିବାର ପ୍ରତିଶ୍ରୁତି ମଧ୍ୟ ମୁଁ ଦେଇସାରିଛି । ଏତେଦିନ ଧରି ଜହର ଓ ତାର ପ୍ରେସ ତୁମର ଯୋଗୁ ଅଧିକାର ଜମାଇ ପାରିନି, ରାଜା ମହାରାଜାମାନେ ଯାହା କରିବାକୁ ସାହସ କରିପାରି ନାହାନ୍ତି—ମୁଁ ତା ପାରିବି, ମାତ୍ର ଗୋଟାଏ ଦିନରେ । ତୁମେ ବୋଧହୁଏ ଶୁଣିଲେ ଆଶ୍ଚର୍ଯ୍ୟ ହବ, କେବଳ Imperial Bankରେ ଗଚ୍ଛିତ ଅଛି ମୋର ଅଜସ୍ର ଟଙ୍କା, ଦରକାର ପଡ଼ିଲେ ହଜାର ହଜାର ଟଙ୍କା ମୁଁ ଜହର ପଛରେ ଲଗାଇ ପାରେ । (ଚେକ୍ sign କରି) ଏଇ ନିଅ ତୁମର advance. ଖାଲି ଏଇ ହଜାରେ ନୁହେଁ, I shall make you master of thousands ଟଙ୍କାର କୁବେର ତୁମେ ହେଇଯିବ ଦେବକୁମାର—I assure you—!

ଦେବ—Thank you very well as you like, Mr. Choudhury ! ( କୁର୍ଣ୍ଣିସ୍ କଲେ )

ସୁଧାଂଶୁ—ଦେଖ ଦେବକୁମାର, ଅତି ସାବଧାନ ହବାକୁ ଯାଇ ଧରା ନ ପଡ଼ି ଯାଅ ଯେମିତି । ଜହର ଅତି ମାମୁଲି ଧରଣର ଲୋକ ନୁହେଁ; ସୁଚତୁର ରାଜନୀତିଜ୍ଞ ! ସାବଧାନ ! ବିଶ୍ୱାସରେ ବାଟ ମିଶେଇ ଧୀରେ ଧୀରେ ତୁମକୁ କାମ ହାସଲ କରିବାକୁ

ହବ । ଭାବରେ, ଭାଷାରେ, ଇଙ୍ଗିତରେ କୌଣସି ଗୋପନ
କଥା ଯେମିତି ପ୍ରକାଶ ନପାଏ । ମୁଁ ତୁମକୁ ଶେଷ ଥରକ
ପାଇଁ ସତର୍କ କରଦେବାକୁ ଚାହେଁ, ଜହର ଭୀଷଣ,
ସାଙ୍ଘାତିକ, ତା' ପଛରେ ଅଛି ଏକ ବିଗ୍ରହ ଜନତା !

ଚୌଧୁରୀ—ଦେବକୁମାର ! ତୁମେ ଅତି ଗୋଟାଏ ବଡ଼ ଦାୟିତ୍ୱର
ଭାର ନେଇଚ । ସେ ଦାୟିତ୍ୱ ତୁମର ଦେଶବାସୀଙ୍କ ପ୍ରତି ।
ଜହର ମିଲ ଓ ଫାକ୍‌ଟରୀର ମଜୁରିଆମାନଙ୍କୁ ଉତ୍ତେଜିତ
କରି ଦେଇଛି । ତାର କଥାରେ ମାତିଯାଇ ସେମାନେ କେବଳ
ମୋର ବ୍ୟବସାୟକୁ ପଙ୍ଗୁ କରେ ନାହାନ୍ତି, ଦେଶର ଶିଳ୍ପ,
ବାଣିଜ୍ୟ ଓ ବ୍ୟବସାୟକୁ ନଷ୍ଟ କରିଦେବାକୁ ବସିଚନ୍ତି ।
ମୋର କଲକାରଖାନା ଶହ ଶହ, ହଜାର ହଜାର
ମଜଦୁରଙ୍କୁ ଖାନାଦାନା ଯୋଗାଏ, ସେସବୁ ପଙ୍ଗୁ ହେଇଯିବା
ଫଳରେ ଦେଶର ବେକାର ସମସ୍ୟା ବଢ଼ି ଚାଲିଚି ।

ସୁଧାଂଶୁ—ଜହରର ମିଥ୍ୟା ପ୍ରଚାର ବିରୁଦ୍ଧରେ ତୁମକୁ ଛିଡ଼ା
ହବାକୁ ପଡ଼ିବ । ୧ଟି ଅଫିସର ଢଙ୍ଗ ହିସାବରେ
ଅଭିନୟ କରି ତାର ଭଣ୍ଡାମିକୁ ଲୋକଙ୍କ ଆଗରେ ଧରାଇ
ଦବାକୁ ହବ ।

ଦେବ—ବୁଝିଲି Mr. Mohanty. ସେଥିପାଇଁ ମତେ ଯେବେ
ବିପନ୍ନ ହବାକୁ ପଡ଼େ, ତା'ହେଲେ ବି ମୁଁ ପଛେଇବି
ନାହିଁ । ଅଚ୍ଛା, ଏଇଥର ତା'ହେଲେ ଉଠେ, Thank you
very well as you like. ( ପ୍ରସ୍ଥାନ )

ଚୌଧୁରୀ—( ଅନନ୍ଦରେ ) ବାସ୍ତବିକ ସୁଧାଂଶୁ, ତୁମର ସନ୍ଧାନ
ଅବ୍ୟର୍ଥ ! ତୁମର କୌଶଳକୁ ପ୍ରଶଂସା ନକରି ରହିପାରୁ
ନାହିଁ । ତୁମର ସାହାଯ୍ୟରେ ମୁଁ ଜହରକୁ ଯନ୍ତାରେ ପକେଇ

ଯାଉଛି । ଯେଉଁଦିନ ଜହ୍ନର ବଦନାମ ଦେଶ ତମାମ୍ ରଷ୍ଟି ହୋଇଯିବ, ସେଇଦିନ ମୁଁ ବୁଝିବି, ମୋ ଅପମାନର ମୂଲ୍ୟ ମୁଁ ପାଇଛି ।

ସୁଧାଂଶୁ—ସମସ୍ତ ପାଖେଇ ଅସିଛି ରିଏସାହେବ ! ନିଜର ଦାମ୍ଭିକତାରେ ଜହ୍ନର ଜାଲ ପୋଡ଼ି ମରିବ । ତା'ପାଇଁ ଦୁଃଖ କରିବାକୁ, ଲୁହ ଟୋପାଏ ଗଡ଼ାଇବାକୁ ସାରା ଭାରତ-ବର୍ଷରେ ଜଣେ ସୁଦ୍ଧା ରହିବ ନାହିଁ ।

ଚୌଧୁରୀ—ଏଇ Studio ଫେରନ୍ତା ଲୋଫରଟାକୁ ତୁମେ କେମିତି ମନେ କରୁଚ ?

ସୁଧାଂଶୁ—ହଜାର ହଜାର ଟଙ୍କାର ପ୍ରଲୋଭନକୁ ଏଡ଼ିଦେବା ଚେଙ୍ଗାର ଦେବକୁମାର ପକ୍ଷରେ ସମ୍ଭବ ନୁହେଁ । ଲୋକଟା ଯେବେ କୌଣସି ମୁହୂର୍ତ୍ତରେ ଫାଙ୍କି ଦେବାର୍ ଚେଷ୍ଟା କରେ, ମୁଁ ତାକୁ ଉଚିତମତ ଶାସ୍ତି ଦେବି । ସବୁବେଳେ ତା ଉପରେ ମୋର କଡ଼ା ନଜର ରହିବ ଓ ତା ପଛରେ ରହିବ ମୋର ଉଦ୍ୟତ ରିଭଲଭର !

ଚୌଧୁରୀ—Private Secretary ! ତୁମେ—

ସୁଧାଂଶୁ—ମୁଁ ଠିକ୍ ଜାଣେ, ରାଶି ରାଶି ଟଙ୍କାର ମୋହକୁ ଭୁଲି ଦେବକୁମାର କେବେହେଲେ ମନିବର ଦୂଷଣା କରିପାରେନା । ଟଙ୍କା ବଳରେ ସ୍ୱର୍ଗର ଦେବତାଙ୍କୁ ମଧ୍ୟ ବଶ କରାଯାଇ ପାରେ ।

ଚୌଧୁରୀ—( ଚେକ sign କରି ) ଅଚ୍ଛା ତୁମେ ଅସ ସୁଧାଂଶୁ । ମୋର ପିଲ୍ ସମ୍ପର୍କରେ ମତେ ଥରେ ଶେଠ୍ ବାଲୁରାମ ଦେଶାଇଙ୍କ ସାଙ୍ଗରେ ଦେଖା କରିବାକୁ ହେବ । ହଁ, ତୁମ ଷ୍ଟୁଡ଼ିଓର ଖବର କଣ ?

ସୁଧାଂଶୁ—ଜହ୍ନର ଭ, ଜହର ମଞ୍ଚରେ ସେ ଲଗିଛ ଗୋଟାଏ ଉନାମାଇଟ୍ ପଦ । ତା'ପାଇଁ ଅମଲୁ କୌଣସିପ୍ରକାର ଦୁର୍ଭାବନା କରିବାକୁ ପଡ଼ିବ ନାହିଁ—She is quite O.K. ( କହୁ କହୁ ପ୍ରସ୍ଥାନ )

( ସୁଧାଂଶୁ ପ୍ରସ୍ଥାନ କଲ ପରେ ଚୌଧୁରୀ ବସି ବସି ଗୋଟାଏ Sketch ଅଙ୍କିବାକୁ ମନ ଦେଲେ । ହଠାତ୍ ତାଙ୍କୁ ଫୋନ୍‌ରେ କିଏ ଡାକିଲା । ସେ ଝୁଙ୍କିପଡ଼ି ଫୋନ୍ ଧରିଲେ । ଜହର ତାଙ୍କ ଅଲକ୍ଷ୍ୟରେ ଏହି ଘରେ ପ୍ରବେଶ କଲେ ) ।

ଚୌଧୁରୀ—Hallo, Hallo, Rai Saheb Amal Chandhuri Speaking—yes Sale—50% profit. That's right—appoint him—Share marketର Experience ଅଛିତ ? That's right. ତା'ର ସାହାଯ୍ୟରେ ସବୁ ଖବର କରନ୍ତୁ—ସବୁ ଖବର ନେଇନଅ । ବଜାର ଡାଉ ରହିଛ, ସବୁମାଲ ଜବତ କରନଅ । Hollo, that's right.

( ହଠାତ୍ ଜହର ଉପରେ ନଜର ପଡ଼ିବାରୁ ଗୋଟାଏ ଅଜଣା ଆତଙ୍କରେ ତାଙ୍କର ଗ୍ଳାନି ଥର ଉଠିଲା—ହାତ ଚହଲିଗଲା—କୌଣସିମତେ ଫୋନ୍‌କୁ ରଖିଦେଇ ମନୋଭାବ ଲୁଚି କୃତ୍ରିମହସ ନେଇ ଫେରିଲେ ଜହର ଉଦ୍ଦେଶ୍ୟରେ) ଜହରବାବୁ ! ଆପଣ · :

ଜହର—ଆପଣଙ୍କ ଟେଲିଗ୍ରାମ ପାଇ ଆସିବାକୁ ବାଧ୍ୟହେଲି ଶ୍ରୀଯୁକ୍ତ ଚୌଧୁରୀ ।

ଚୌଧୁରୀ—ବସନ୍ତୁ, ଆପଣ ତା'ହେଲେ ମୋ ପ୍ରସ୍ତାବରେ ରାଜି ?

ଜହର—ସେ ପ୍ରଶ୍ନ ପରେ ଉଠିବ । ଆଗେ ଆପଣ କୁହନ୍ତୁ ତ ଆପଣଙ୍କର partnership businessର ମୂଳ ଉଦ୍ଦେଶ୍ୟ

କଣ, capital କେତେ ଦରକାର ଅଳ୍ପ ଟଙ୍କା ମାତ୍ରରେ ଏ ବ୍ୟବସାୟ ଚାଲୁ କରିହେବ ? ତା’ଛଡ଼ା ଏଭଳି ବ୍ୟବସାୟରେ ମତେ ନିମନ୍ତ୍ରଣ କରିବାର ଅର୍ଥ କଣ ? ଅପଣଙ୍କ ଭଳି ମୁଁ ଲକ୍ଷପତି ନୁହେଁ, ମୋର Mill ନାହିଁ, Factory ନାହିଁ, କିଛି ନାହିଁ କିମ୍ବା Share marketରେ ଦଲାଲ୍ କରି ଅସେନା ମତେ । ଅପଣଙ୍କ ଅମନ୍ତ୍ରଣର ଅର୍ଥ କିଛି ବୁଝିପାରିଲି ନାହିଁ ଶ୍ରୀଯୁକ୍ତ ରାଏସାହେବ । ମୋ ପରି ଗରିବ ପ୍ରତି ଏ ଅଯାଚିତ ଅନୁଗ୍ରହର କାରଣ ଜାଣିପାରେ କି ?

ଚୌଧୁରୀ—ଦେଖନ୍ତୁ, ଜହର ବାବୁ, ଅପଣ କୌଶଳୀ, ସୁନିପୁଣ, ରାଜନୀତିଜ୍ଞ । ଅପଣଙ୍କ ସାଙ୍ଗରେ କୌଣସିପ୍ରକାର ଚାତୁରୀ ନିଷ୍ଫଳ । ସେଥିପାଇଁ ମୁଁ ସ୍ଥିର କରିଛି, ଅପଣଙ୍କ ସହିତ ପୂର୍ଣ୍ଣ ସହଯୋଗ କରି ମୋର ବ୍ୟବସାୟ ଚଳାଇବାକୁ ଯେଉଁଥିରେ ଉଭୟ କୁଳ ରକ୍ଷା ହେବ—ସେଥିପାଇଁ ମୁଁ ଚମତ୍କାର ଅବିଷ୍କାର କରିଛି ।

ଜହର—ଅର୍ଥାତ—?

ଚୌଧୁରୀ—ଅପଣଙ୍କ ଦେଶସେବା ମୂଳରେ ଦରକାର ପ୍ରଚୁର ଟଙ୍କା । ଟଙ୍କା ନଥିଲେ ଦୁନିଆରେ କୌଣସି କାର୍ଯ୍ୟ ହେବାର ହୁଏନା । ଅପଣ ଯେବେ ମୋ ସହିତ co-operate କରି ବ୍ୟବସାୟରେ ସାହାଯ୍ୟ କରନ୍ତି, ତା’ହେଲେ ଅପଣ ବହୁତ ଟଙ୍କା ପାଇ ପାରିବେ । ଅପଣଙ୍କର ଲୋକସେବା ଅବାଧରେ ଚାଲିପାରିବ ।

ଜହର—ଅଭିନବ ପନ୍ଥା ଶ୍ରୀଯୁକ୍ତ ଚୌଧୁରୀ ! ଲୋକସେବାର ଆଦର୍ଶ ଧରି ଶୋଷଣ କରିବା ନୀତି ମତେ ଅଜି ଶିଖାନ୍ତୁ ନାହିଁ ।

ମୁଁ ଠିକ୍ ଜାଣେ, ସେଥିରେ ଯଥେଷ୍ଟ ଉପାର୍ଜନ ହୁଏ, କିନ୍ତୁ ମନୁଷ୍ୟତା ଟିକିଏ ବଳିଦେଇ ଅର୍ଥ ଉପାର୍ଜନ କରିବା ମୋର ନୀତିବିରୁଦ୍ଧ ଜାଣିସୁଦ୍ଧା ମତେ ଆମନ୍ତ୍ରଣ କାହିଁକି ?

ଚୌଧୁରୀ—ଜହରବାବୁ, ନାଁ ନବାକୁ ହେଲେ ଟଙ୍କାର ବିଶେଷ ଦରକାର । ପୃଥିବୀର ପ୍ରତ୍ୟେକ ଉଦ୍ଦେଶ୍ୟ ମୂଳରେ ଟଙ୍କାର ପ୍ରତିପତ୍ତି ରହିଛି । ଯୋଉମାନଙ୍କର ଯେତେ ବେଶୀ ଟଙ୍କା ସେମାନେ ସେତିକି ପୂଜ୍ୟ । ସେଥିପାଇଁ ମୁଁ ଆପଣଙ୍କୁ ଉପଦେଶ ଦେଉଛି, ଆପଣ ମୋ ପ୍ରସ୍ତାବରେ ସମ୍ମତ ହୁଅନ୍ତୁ ।

ଜହର—ଆପଣ ଅବିବେକୀ ! ଭଲ ଭାବରେ ମୋର ସମସ୍ତ ନଷ୍ଟ କରି ମତେ ଅପମାନ କରି ଦୁଇ ଗୁହଟା ବଡ଼ ବଡ଼ ବାକ୍ୟ କଥା ଶୁଣାଇବା ଆପଣଙ୍କର ହୁଏତ ସୌଖିନ ବିଳାସ—ମୁଁ ଗଲିଲି, Mr. Chaudhuri.

ଚୌଧୁରୀ—A minute please ! ଜହର ! ତୁମେ ବୋଧହୁଏ ଭୁଲିଯାଉଛ ଏଇଟା ମୋର ଘର । ମୋର ଆଖି ସାମନାରେ ଛିଡ଼ା ହୋଇ, ମୋର ଜାଗାରେ ମତେ ଅପମାନ କରିବାର ଦୁଃସାହସ ମତେ ଆଶ୍ଚର୍ଯ୍ୟ କରୁଛି । Alright, ତୁମେ ଯାଅ, ଦିନ ଆସିବ, ଏ ଦୁରାକାଂକ୍ଷାର ପୁରସ୍କାର ତୁମେ ପାଇବ ।

ଜହର—ଚମତ୍କାର ଶ୍ରୀଯୁକ୍ତ ଅମଳ ଚୌଧୁରୀ ! ଜହର ସବୁବେଳେ ଜହର—ଲାଲ୍ ଆଖି ଦେଖିଲେ ମଧ୍ୟ ସେ ନଇଁପଡ଼େ ନା, ଏଇ କଥାଟା ଆପଣଙ୍କର ମନେ ରଖିବା ଉଚିତ ।

ଚୌଧୁରୀ—Shut up. !—

ଜହର— ହାଃ—ହାଃ—ହାଃ । ଅବଶୋଷ Mr. Chaudhuri ଅବଶୋଷ । ଘରେ ପ୍ରତିଧ୍ୱନି କେବଳ ଆପଣଙ୍କର ରୂଢ଼ତାର ଜବାବ ଦେଇଛି । ଅଚ୍ଛା ନମସ୍କାର, ଅଭିନୟ ଦେଖିବାକୁ ମୋର ସମୟର ବଡ଼ ଅଭାବ ( ପ୍ରସ୍ଥାନ ) ।

(ପ୍ରବଳ ଉତ୍ତେଜନାରେ Chaudhuri calling bellରେ ହାତ ଦେଲେ ।)

ଚୌଧୁରୀ—O. K, I will teach the devil a good lesson !

---



୩

## ପ୍ରଥମ ଦୃଶ୍ୟ

[ ସିନ୍ ଉଠିଲାବେଳକୁ ଦେଖାଗଲା, ଘନଶ୍ୟାମ ପଦଚାରଣ କରୁଛନ୍ତି, ମୁହଁରେ ଘୋର ବିଷାଦର ଛାୟା । ପଥର ମୂର୍ତ୍ତିପରି ଗୋଟାଏ କୋଣରେ ଛିଡ଼ା ହୋଇଛି ପ୍ରାଣନାଥ, ପାଚେରି ପାଖକୁ ଲାଗି ପିଅରମଣି, ଆଖିରୁ ଲୁହ ଗଡ଼ୁଚନ୍ତି ; ଦୁଃଖକୁ ଚାପି ରଖିଲେ ମଧ୍ୟ ବୁକୁଭେଦା କୋହ ଉଠୁଛି ]

ପ୍ରାଣନାଥ—ବଡ଼ବାପା···( ପ୍ରଥମେ ନୀରବତା ଭାଙ୍ଗିଲା )

ଘନ—ତୁନି ହୋ—ମତେ ଭାବିବାକୁ ଦେ—ମୁଣ୍ଡ ବାଡ଼େଇ କାନ୍ଦିବାକୁ ମୋର ଆଉ କିଛି ନାହିଁ । ମୁଁ ନିଜେ ନିଜେ ଏଇ ଦୁଃଖ ଅର୍ଜିଛି । ଏଇକ୍ଷଣି ମୁଁ ଖାଲି ଭାବୁଛି, ମୋ ଘର ଉପରେ ବିଧାତାର କାଳ ନଜର ପଡ଼ିଲା କାହିଁକି, କାହା ଯୋଗୁଁ ?

ପିଅର--ଏ ଆଉ କିଛି ନୁହେଁ । ତୁମ ଅଲକ୍ଷଣୀ ବୋହୂଙ୍କ ଜାତକର ଗୁଣ । ସେତେବେଳେ କହୁ କହୁ ଜାତକ ତ ମିଳେଇଲ

ନାହିଁ, ନାହାକ ଅବଧାନ ଓ ଦେଖେନାଲ ନାହିଁ । ବାହା-
ଘରର ଯୋଠକ, ଦାଣପେଞ୍ଚକ କଣ ଆଜ ମିଛ ?

ଧନ—ତୁମ ହୁଅ, ମିଛରେ ବୋହୂକୁ ଦୋଷ ଦଅନା । ବୋହୂଠି ତ ମୁଁ କେବେହେଲେ କିଛି ଖରାପ ଲକ୍ଷଣ ଦେଖି ନ ଥିଲି । ଖାଲି ତୁମର ଦୋଷରୁ ମୋ ଘର ଆଜି ଭାଙ୍ଗିଯାଉଛି । ତୁମର ପାଖରୁ ମୁଁ ବହୁ ଥାଉଁ ଥାଉଁ ଜଣ୍ଡଅର ମନ୍ଦ ଖବର ଶୁଣିଲି । ତୁମର କଥାରେ ବାପ ହୋଇ ପୁଅକୁ ମୁଁ ପଇସା ଲୋଭରେ ହାଣି ମୁହଁକୁ ପଠେଇଥିଲି ! ସେୟ ତାର ଫଳ, ଆଜ କିଛି ନୁହେଁ ।

ପ୍ରାଣ—ସେ କଥା ଭାବିଲେ ଆଜ ଛଣି ହବ ବଡ଼ା'ପା ! ଗଲା କଥା ତ ଆଉ ଫେରିବ ନାହିଁ । କଲିକତାରେ ଏଇନେ ହୋଉ ହାଣକାଟ, ଖାଲି ବଳ୍ପୁଅ ବହୁ ଯାଉଛି । ରାସ୍ତାଘାଟ ସବୁ ମଶାଣି । ସେଇ ମଶାଣିରେ କେତେ ବାପ, ପୁଅ, ଭାଇ ମରି ଶୋଉଛନ୍ତି । ଏ ବିପଦ ତୁମକୁ ଏକା ପଡ଼ିନେଇଁ, ବଡ଼ା'ପା ! ଦେଶକୁ ପଡ଼ିଛି, ପୃଥିବୀକୁ ପଡ଼ିଛି ।

ଧନ—କଲିକତା ଖବର ମତେ ଶୁଣାନା ନାଥ ! ମୋ ପୁଅ ଖବର କେତେ କହ'! ମୁଁ ଜଣେ କହିବ ମତେ କହ ! ପୁଅ ମୋ'ର ଅଭିମାନରେ ଘରୁ ଚାଲିଗଲା । ସେଇ ଯେ ଗଲା, ସେଇଠି ରହିଲା ସବୁଦିନପାଇଁ । ନାଥ ! ତୁ ମତେ ଖାଲି ତାର କଥା କହ । ମୋ ମନରେ କିଛି କଷ୍ଟ ହବନାହିଁ—ମୋ ଆଖିରୁ ଲୁହ ବହିବ ନାହିଁ । ଥରେ, ଧନଲୋଭ ଯେ ପଇସାର ସ୍ୱପ୍ନ ଦେଖେ ତା ଆଖିରେ ଲୁହ ଆସିବ କୋଉଠୁ ?

ପିଅର—ଏମିତ କାହିଁକି ଗପୁଚ ? କେତ୍‌ୟାଡ ଜଣ ଅଜ ଫେରଅସିବ ? ସକାଳ ପହରୁ ଏମିତ ହଜୁଚ ଯେ, ଅସି ସଞ୍ଜ ହବାକୁ ବସିଲା । ଏଥିରେ ତୁମ ଦାହ ବଢ଼ିବ ?

ଘନ—ମୋ ମଜାଟଣ ବ୍ୟସ୍ତ ହୁଅନାହିଁ, ଜଣ୍ଡବୋଜ । ମୁଁ ଭଲଭାବରେ ଜାଣେ ମୁଁ ମରଗଲେ ତୁମର ଶାନ୍ତିର ନିଶ୍ୱାସ ମାରବ । ମୁଁ ବୁଢ଼ା—ମୁଣ୍ଡର ବାଳଗୁଡ଼ାକ ପାଚ ଟୋଟ ହେଇଯାଇଚ । ମୁଁ ତୁମ ବୟସର ମୂଲ୍ୟ ଦେଇ ପାରେନା—ସେ କଥା ମୁଁ ବେଶ୍ ବୁଝେ । ମୁଁ ମରଗଲେ ମୋର ଗୃହ ଗୋଟାଟା ଖାଲି ତମ ହାତକୁ ଯିବ, ସେ କଥା ମୁଁ ବୁଝିଚ ।

ପିଅର—( କାନ୍ଦ କାନ୍ଦ ) ଛି, ଛି, ତୁମେ ପାଗଳ ହେଲ ନା କଣ ? କାହିଁକି, ଯେବେ ତୁମ ମନରେ ଏମିତକା କଥା ମୁଁ ମରଗଲେ ଏବେ—

ଘନ—ଥାଉ, କାହାର ମରବା ଦରକାର ନାହିଁ । ତୁମର ଏ ଧମକରେ ମୋର ଭଙ୍ଗାଘର ପୁଣି ତୋଳା ହବନାହିଁ !

ପିଅର—ମଲା ! ଘର ଭାଙ୍ଗିଯିବ କାହିଁକି ? ମୋର ଯୋଉ ମାନ ଭାଇଟି ଅଛୁ, ତାକୁ ଅଣିଲେ କଣ ହବ ନାହିଁ ? ଶଳା କଏ, ପୁଅ କଏ !

ଘନ—ତୁନ ହୁଅ ଜଣ୍ଡବୋଜ, ତୁନ ହୁଅ । ଜଳନ୍ତା ନିଅଁରେ ଅଉ ଲୁଣ୍ଟା ପକାଅ ନାହିଁ । ନାଥ ! ତୁ ମତେ ଖାଲି ଜଳଅ ଖେବର କହ । ତାର ହସ ହସ ମୁହଁଖଣ୍ଡିକ ସବୁବେଳେ ମୋ ଅଖି ଅଗରେ ନାଚୁଚ । ମୁଁ ନିଜ ମନକୁ ବୋଧ ଦେଇ ପାରୁନାହିଁ ।

ପ୍ରାଣ—( ଦୀର୍ଘ ନିଃଶ୍ୱାସ ମାରି ) କେତେଥର ଆଉ ଶୁଣିବ ବଡ଼ା'ପା !
ଲୁଗାପଟା ଦୋ'କାଣ୍ଡ ଭାଗରେ ଯାଇ ମୁଁ ଯେ ଜୀବନ ନେଇ ଫେରିଛି ଅସିତ, ତେଣିକି ମୋର ପୂର୍ବ ଜନ୍ମ ତପସ୍ୟାର ଫଳ। ହାତରେ ଛୁରି ନେଇ ଗୁଣ୍ଡାମାନେ ଯେତେବେଳେ ଛୁଟିଆସିଲେ, ମୁଁ ଜ୍ୟୋତିବାବୁଙ୍କୁ ବଞ୍ଚେଇବାକୁ ବହୁତ ଚେଷ୍ଟା କରିଥିଲି— ହେଲେ ପାରିଲି ନାହିଁ। ଆଖି ପିଛୁଳାକେ ସବୁ ଓଲଟ ପାଲଟ ହୋଇଗଲା। ଏକମୁହାଁ ହୋଇ ଦାଉଡ଼ି ଦାଉଡ଼ି ଆସି ଯେତେବେଳେ ପଛକୁ ଚାହିଁଲି, ସେତେବେଳେ ଗୋଟାଏ ପୁଲିସ ଲରୀ ଛଡ଼ା ଆଉ କିଛି ଦେଖିଲି ନାହିଁ।

ଘନ— ତା'ପରେ ? ନାଥ ! ତୁ ଖାଲି କହୁଯା—ମତେ କହୁଯା—

ପ୍ରାଣ—ଆଉ କଣ କହିବି ବଡ଼ା'ପା ! ମୋ ଛଡ଼ା ଗୁଣ୍ଡାମାନଙ୍କ ହାତରୁ ଆଉ କେହି ବଞ୍ଚିପାରି ନାହାନ୍ତି। ଓଡ଼ିଆ କର୍ମୀମାନେ ସମସ୍ତେ ମରିଗଲେ। ଆଜି ଏକା ତୁମେ ନୁହଁ, କେତେ ବାପ ତାଙ୍କ ପୁଅମାନଙ୍କ ସକାଶେ ଝୁରି ମରୁଥିବେ।

ଘନ—ମୁଁ ବାପ ନୁହେଁ ନାଥିଆ, ମୁଁ ଗୋଟାଏ କଂସେଇ। ବାପ ବୋଲି କହିବାକୁ ମୋର ଅଧିକାର ନାହିଁ। ଚଢ଼ା ଦରରେ ଧାନ ଗୁଡ଼ାକ ବିକି ଦେଇ କରି ପଇସା ଗଦା କରିବା ମୋର କାମ। ବାପ ହୋଇ ପୁଅର ସ୍ନେହ ଅବଦାର ଶୁଣିବାକୁ ମୋର ବେଳ ନ ଥାଏ। ଏହି ତାର ପ୍ରାୟଶ୍ଚିତ୍ତ। ମୁଁ ଆଉ ବଞ୍ଚି ଥାଇଁ ଥାଉଁ ମରିଛି। ତୋ ଆଗରେ ଯିଏ କଥା କହୁଛି, ସେ ହଜଣ ଘନଶ୍ୟାମ ବୁଢ଼ାର ପ୍ରେତ। ଯାଅ ତୁମେମାନେ ମୋ ସାମନାରୁ ପଳାଅ, ବଞ୍ଚିଯିବ।

ନାଥ—ବଡ଼ା'ପା, ମୁଁ କାରଖାନାକୁ ଫେରିଯାଇ ପାରିଲି ନାହିଁ।

ଘନ—ସେଇଥିପାଇଁ ତୋର ପିତ୍ରଧନର ସାଙ୍ଗ ତୋର ସ୍ତ୍ରୀରତ୍ନକୁ ଗୁଣ୍ଡା ହାତରେ ସମର୍ପିଦେଇ ଆସିଲୁ ? ଭଲ କଲୁ ବାପା, ଯଛା କଲୁ, ନ ହେଲେ 'ପୁଣି ଏ ସୁଖବରଟା ଆଣି ଦେଇଥାନ୍ତା କିଏ ?

ନାଥ—ବଡ଼ା'ପା !

ଘନ—ନା, ତୁ ଚାଲିଯା, ତୁ ନଗଲେ ମୁଁ ଭଟେ ଧକ୍କା ଦେଇ ବାହାର କରିଦେବି । ( ନାଥର ଯିବା ସମୟରେ ) ଶୁଣ୍ ନାଥ ! ସାଙ୍ଗହୋଇ ଚୁକ୍ତି କରିବାକୁ ଗଲି, ଏକାଟି ରହିଲୁ, ତୁ ତାକୁ ମଣିଷଟା ଭିତରେ ଏକା ଫେଲିକରି ଦେଇ ଆସିଲୁ, ରାଧା ଭଳି ଝିଅର ମଥାରୁ ସିନ୍ଦୂର ପୋଛି ଦବାକୁ ? ( ନାଥ ଚାଲିଗଲା ) ଦେଖୁଛି ଜଗତବୋଲ ! ନାଥ ଚାଲିଗଲା । ତା ଘରକୁ ସେ ଚାଲିଗଲା, ମୋ ଘରକୁ ତ କେହି ଆସିଲେ ନାହିଁ ଜଗତବୋଲ ! ମୋ ଘରକୁ କେହି ଆସିଲେ ନାହିଁ । (କୋହ ସମ୍ଭାଳି ନପାରି ପାଗଳ-ପରି ଟଳି ଟଳି ଚାଲିଗଲେ । ଏତିକିବେଳେ ଅନ୍ତରାଳରେ ନାସ୍ତି-କଣ୍ଠ-ରୋଳ ଶୁଭିଗଲା, ରାଧାକୁ ନେଇ ଦୁଇ ଜଣଜଣ ଗ୍ରାମ୍ୟ ବିଧବା ପ୍ରବେଶ କଲେ— )

ପିଅର—(ସେମାନଙ୍କୁ ଦେଖି ଶୀଘ୍ର ଚାଲିଗଲେ । ରାଧାର ମୁଣ୍ଡର ସିନ୍ଦୂର ଦାଉ ଦାଉ ହୋଇ ଜଳୁଛି । ମୁଣ୍ଡବାଳ ମୁକୁଳା— କାଚପରି ଆଖିଯୋଡ଼ିକ ସ୍ଥିର । ସେଥିରେ ଲୁହ ନାହିଁ—ସେ ପାଷାଣ ପାଲଟି ଯାଇଛି— କୁମ୍ଭକଳା ଶାଢ଼ୀଖଣ୍ଡିକ ପିନ୍ଧିଛି ।

୧ମା—ଅଲୋ, ମୁଁ କହୁଛି ଗଣ୍ଡଅ କୂଳକୁ ନେଇଯାଇଥିଲେ ଭଲ ହୋଇଥାନ୍ତା । ଏକାନଟେ ସେଇଟି ସବୁ କାମ ଛୁଟିହୋଇ ଗାଧୋଇ ପଡ଼ି ଆସିଥାନ୍ତା ସିନା ।

୨ସ୍ତ୍ରୀ—ନାଇଁ ମ ! ଏଇଠି ହେଲେ ହବ । କୋଉଠି ଯେମିତି ପଥର ପଡ଼ ହଜନ୍ତି.. ତାଙ୍କୁ ସେ ଯାଏ ନେଇକରି ଯିବା କାଠିକର ପାଠ । ( ରାଧାଙ୍କୁ ବଳେଇ ବେଢ଼ିଗଲେ ତାଙ୍କୁ )

୧ମା—ଅଲେ ଗ୍ଲେଟ କପାଳ ! ଅଜ ସେମିତି ହେଲେ କଣ ହବ ? ଘ୍ରଣ୍ଟି ପଥର କରନ୍ତେ, ମାଇପି ଜନମ ଏମିତିକା ହିନମାନୀ, କାନ୍ଦଲେ ବୋବେଇଲେ ଅଜ କଣ ହବ ?

୨ସ୍ତ୍ରୀ—ହିଁଲେ ନବାହ୍ନୁ ! ସଂସାର ଭିତରେ ଘର କରଥିଲେ ପଥର ପଡ଼ିଲେ ସହ୍ୱ । ଏ ପୋଡ଼ା ଅଲଣା ଜୀବନ ଥିବାଯାକେ ସବୁ ସହୁବାକୁ ପଡ଼ିବ । ଯେତେ ଅଜ ଦୁନଅରେ ନୂଆ ନୁହେଁ । ସବୁ ଘରକୁ ଏ ବିପଦ ଅଛି । ସବୁକାଳେ—ସବୁଯୁଗେ । ( ରାଧା ହାତରୁ ବାଲ୍ଟି, ବଟଘଲ ହୁଗାଲ କାଢ଼ି ବସିଲେ—ରାଧା ଜଳ ଜଳ କରି ଅନେଇ ଥାଏ ଉପରକୁ କେଉଁ ଅଜ୍ଞାତ ଶକ୍ତି ଉଦ୍ଦେଶ୍ୟରେ ଅଖିରୁ ଧାର ଧାର ହେଇ ଲୁହ ବହି ଯାଉଥାଏ ) ।

୧ମା—ଦେ, ବେଗି ବେଗି କରମ, ହରନାମୀ । ବେଳ କଣ ଥଉଛି କଲେ ? ମଲ ଉପରେ ଅଜ ଶଗଡ଼ ଚଳଉଛୁ କାହିଁକି ?

୪ସ୍ତ୍ରୀ—ରହୁଥା, ଇଏ କଣ ଅଉ କିଛି ନାମ ହେଇଚ ! ତାର ଥଙ୍କ ଜୀବନ ସଜଡ଼ା ସରି ଯାଉଛି, କେଇଟା ଦିନପାଇଁ ଏତେ ଦ୍ୱୀଜକପାଳ ନେଇ ଶାଶୁଘରକୁ ଅସିଥିଲା ଯେ ପିଲାଟିଏ ଗୋଟିଏ ନ ହଉଣୁ ଗେରସ୍ତକୁ ଖାଇଲା (କାଚ ବାଡ଼େଇ ଭାଙ୍ଗିଦେଲା )

୧ମା—ଭଗବାନଙ୍କ ବିଚାର, କାହାର କଅଣ ହାତ ଅଛି ? (ମୁଣ୍ଡର ସିନ୍ଦୂର ପୋଛିଦେଲା । ରାଧା କଣ କହିବାକୁ ଯାଇ ବାକ୍‌ରୁଦ୍ଧ ହେଲା )

ଘନ—( ସହସା ପ୍ରବେଶ କରି ଦେଖି ମୂକ ଜଡ଼ ପାଲଟିଗଲେ ) ଏ ସବୁ କଣ ହଉଚ ଧ୍ରୁବ ? ଅରେ, ପୋଖରୀ ତୁଠଟାକୁ ନଯାଇ ଏଠି ଅଗଣାଟାରେ—( ରାଧା ଅଡ଼କୁ ଚାହିଁ ପାରିଲେ ନାହିଁ ଦୁଃଖରେ )

୨ସ୍ତ୍ରୀ—ଅଗଣାରେ ହେଲେ କିଛି ଦୋଷ ନାହିଁ, ଘନଭାଇ ।

ଘନ—ମୁଁ ତୁମ ମାଇପି ଶାସ୍ତ୍ର ଶୁଣିବାକୁ ଚାହେଁନା । ତୁମେ ତାକୁ ସିଆଡ଼େ ନେଇଯା—ରକ୍ତ ମାଂସର ଦେହ ବନ୍ଧୁ ମୁଁ ଏତେଟା ସହି ପାରିବିନାହିଁ । ( ଚାଲି ଯାଉଥିଲେ ପୁଣି ଫେରି ) ଥାଉ ଥାଉ ଧ୍ରୁବ, ବୋହୂ ହାତରେ କାଚ ଶଙ୍ଖା ସେମିତି ଥାଉ ! ମୁଁ ସହି ପାରିବି ନାହିଁରେ ! ଏତେ ବଡ଼ ଦୁଃଖ ମୁଁ ସହି ପାରିବିନି । ବରଂ ମୁଁ ସମାଜକୁ ଛାଡ଼ି ଚାଲି ଯିବି । ହଁ, ଏ ଅନ୍ଧ ସମାଜକୁ ନଈରେ ଭସେଇ ମୁଁ ମୋ ବାଟରେ ଚାଲିଯିବି ।

୨ସ୍ତ୍ରୀ—ଛି, ଘନଭାଇ (ରାଧାକୁ ଛଡ଼ା କରି) ଚାଲ ଲୋ, ପୋଖରୀ କୂଳକୁ ଚାଲ ।

ଘନ—ଧ୍ରୁବ ! ମୁଁ ଭାରି ଭୁଲ କରୁଛି ନା ? ସମାଜକୁ ଏଡ଼ିଦେଇ ମୁଁ ଚଳିପାରିବି ନାହିଁ ନା ? ହଁ ଧ୍ରୁବ ! ପୁଅ ତ ମୋର ଗଲା, ବୋହୂର ଆଉ କାଚ ଶଙ୍ଖାରେ ଦରକାର କଣ ?

ରାଧା—( କାନ୍ଦି କାନ୍ଦି ଘନଶ୍ୟାମଙ୍କ ଗୋଡ଼ ଧରି ପଡ଼ିଯାଇ ଡାକିଲା ) ବାପା !

ଘନ—ନା, ମା', ତୁ ଏତେ କିଛି କହନା (କାନ୍ଦି କାନ୍ଦି ଚାଲିଗଲେ)

୨ସ୍ତ୍ରୀ—ଅଲୋ, ବେହୋସ ତ ହେଇଗଲା ଧରମ !

---

## ଦ୍ୱିତୀୟ ଦୃଶ୍ୟ

— ଜହରର ପ୍ରେସ ସଂଲଗ୍ନ ରୁମ୍ —

(ସିନ୍ ଉଠିଲାବେଳକୁ ଦେଖାଗଲା ଜହର ଗୋଟାଏ Proof ଦେଖି Manager ହେମନ୍ତ ସାଙ୍ଗରେ କଥାବାର୍ତ୍ତା କରୁଥିଲେ )

ହେମନ୍ତ—ଆଜ୍ଞା, କମ୍ୟୁନିଷ୍ଟମାନଙ୍କ paper ରେ Minister ମାନଙ୍କ କାର୍ଯ୍ୟକଳାପ ବିରୁଦ୍ଧରେ ଯେଉଁ ଅନର୍ଥକ Criticism ପ୍ରକାଶ ପାଉଛି, ଆମ୍ଭମାନଙ୍କୁ ତାର ଜବାବ୍ ଦବାକୁ ହବ । ଏଇସବୁ ଜଘନ୍ୟ ପ୍ରଚାର କରି ସେମାନେ କଂଗ୍ରେସ ଉପରୁ ଲୋକଙ୍କର ଆସ୍ଥା କମେଇ ଦେଉଛନ୍ତି । ସାରା ଜୀବନ ଧରି ମହାତ୍ମାଜୀ ଯେଉଁ ଅନୁଷ୍ଠାନକୁ ସତ୍ ଓ ମହତ୍ କରି ସ୍ୱାଧୀନତା ଦ୍ୱାରରେ ଅଗେଇ ନେଇଛନ୍ତି ଅକାରଣରେ ସେ ଅନୁଷ୍ଠାନ ଅଙ୍ଗରେ କଳଙ୍କ ବୋଳା ହଉଛି । ବିଶେଷ ଭାବରେ 'ଧୂମକେତୁ' ସେ କାଗଜର ସମାଲୋଚନାର ତୀବ୍ର ପ୍ରତିବାଦ କରିବା ଉଚିତ ।

ଜହର—( ହସି ) ଭୁଲ ବୁଝିଚ, ହେମନ୍ତ ! ଯେ ସତ୍ ଓ ମହତ୍ କଳଙ୍କର ଛାୟା ତାକୁ ସ୍ପର୍ଶ କରିପାରିବ ନାହିଁ । ଗୋଟାଏ ଯୁଗର ବିରାଟ ଆଦର୍ଶ ନେଇ ସେ ଚିରଦିନ ବିଜୟୀ ରହିଯିବ ।

ହେମନ୍ତ—କିନ୍ତୁ, ଆଜ୍ଞା –

ଜହର—ସମାଲୋଚନା କରି ଦୋଷଗୁଣ ବାଛିବାକୁ ଅନ୍ୟ ଜଣେ ନଥିଲେ କେହି ତାର ମହତ୍ ଲକ୍ଷ୍ୟ ବା ଆଦର୍ଶ ବଜାୟ ରଖିପାରେ ନାହିଁ । ତା'ଛଡ଼ା ବ୍ରିଟିସ ଭଳି ସୁଚତୁର,

ପଶ୍ଚିମୀ ଜାତି ସହିତ ତାଳ ଦେଇ ଯୋଉ ଜାତି ତା ଅନୁଷ୍ଠାନ ଏତେଦିନ ପରେ ମୁକ୍ତ ଆଲୋକର ସନ୍ଧାନ ପାଇପାରିଛି, ସେ କେବେହେଲେ ପୁଣି ଅନ୍ଧାର ଭିତରକୁ ଫେରି ପାରିବନା । ବ୍ୟସ୍ତ ହୁଅ ନାହିଁ ହେମନ୍ତ ! 'ଧୂମକେତୁ' ଏ ଅବିଚାରର ଜବାବ ଦେବ, ପ୍ରତିବାଦ କରିବ । ଗୋଟାଏ ଦୁଷ୍ଟ ଗ୍ରହର ଅଶୁଭ ଦୃଷ୍ଟିରେ ଶତ ଶତ ବର୍ଷ ଧରି ଏଇ ଶାସକ ଜାତି ଶାସିତ ହୋଇଥିଲା । ଏଣିକି ତା ହେବ ନାହିଁ । ଗ୍ରହର ଦୃଷ୍ଟି ଫେରିଛି ! ସୁପ୍ତସିଂହ ଆଜି ଜାଗରିତ ! ଆମକୁ ଅଶୋକ, ଖାରବେଳର ସାମ୍ରାଜ୍ୟ ଗଢ଼ିବାକୁ ହେବ । ଆମର ଦେଶ ଦୀନ ଦରିଦ୍ର ନୁହେଁ । ତା'ର ଠାକୁର ଜଗତର ଅଧୀଶ ଦେବତା ଜଗନ୍ନାଥ ! ତା'ର ସବୁ ବଡ଼, ଧନେ ସେ ବଡ଼ ଥିଲା, ପୁଣି ବଡ଼ ହେବ । କୌଣସି ଶକ୍ତି ତାକୁ ରୋକି ପାରିବ ନାହିଁ । ହିମାଳୟ ପରି ସେ ଅଟଳ, କୌଣସି ତୋଫାନ ତାକୁ ଟଳାଇ ପାରିବ ନାହିଁ । ସହି ସହି ଯେ ପଥର, ମାଡ଼ ଖାଇଲେ ସେ ଭାଙ୍ଗିବ ନାହିଁ । ( ବାବୁଆ ହଠାତ୍ ପ୍ରବେଶ କଲା )

ବାବୁଆ—ବାବୁ ! 'ଜହର' ବନ୍ଧୁର ଶେଷ ଫର୍ମା ଭାଙ୍ଗି ଯାଇଛି ।

ଜହର—ନା ! ଭାଙ୍ଗି ପାରେନା ! ( ଟିକିଏ ରହି ) ଓଃ, ଫର୍ମା ଭାଙ୍ଗିଯାଇଛି ନା ? ଆସ ଭିତରକୁ ଆସ ହେମନ୍ତ । ଆଜି ଏ ସ୍ମରଣର କାମ ଶେଷ ହେବା ଦରକାର । ( ପ୍ରସ୍ଥାନ )

ହେମନ୍ତ—ବାବୁଆ ! ତୁ ଏଇଠି ଥା, ଯିଏ ଦେଖା କରିବାକୁ ଆସିବ, ଖବର ଦବୁ । ( ପ୍ରସ୍ଥାନ )

( କୋଣରେ ଥିବା Statueଟିକୁ ପରୀକ୍ଷା କରୁଥିବା ବାବୁଆ, ଭକ୍ତିରେ ଭାବପ୍ରବଣ ହୋଇ ବାର ବାର ପ୍ରଣାମ କରୁଥିଲା ସେ ।

ପ୍ରବେଶ କଲା ଛପ୍ପା । ବାବୁଅର କାଣ୍ଡ ଦେଖି ନ ହସି ରହି ପାରିଲା ନାହିଁ । )

ଛପ୍ପା—କଣ ହଉଚି ଏବେ ?

ବାବୁଅ—(ହସି) ନାଇଁ ଛପ୍ପା ଦେଈ ! ମୁଁ ଏଇ ମୂର୍ତ୍ତି ପାଖରେ ଛିଡ଼ା ହେଇଥିଲି । ବାବୁ ଏଇଠି ଠିଆହେଇ ମନକୁ ମନ କଣ କହନ୍ତି । ମୁଁ ଦେଖିଚି, ବେଳେ ବେଳେ ତାଙ୍କ ଆଖିରୁ ଲୁହ ଝରିପଡ଼େ ।

ଛପ୍ପା—ସତେ ? (ଫ୍ରେମ୍‌ରେ ଥିବା ଜହର ଫଟୋ ଆଡ଼କୁ ଚାହିଁ) ବାବୁ ତୋର ଭାରି କଡ଼ାଲୋକ, ନୁହେଁ ରେ ?

ବାବୁଅ—ଛି, ଦେଈ ! ତୁମେ ତା'ହେଲେ ମୋଟେ କିଛି ଜାଣ ନାଇଁ । ଜହର ବାବୁ ଭାରି ଭଲ ଲୋକ ! ଆମମାନଙ୍କୁ ଭାରି ସ୍ନେହ କରନ୍ତି ।

ଛପ୍ପା—ଓଃ, ସ୍ନେହ କରନ୍ତି ?

ବାବୁଅ—ହିଁ ।

ଛପ୍ପା—ତା'ହେଲେ ବାହା ହେଉ ନାହାନ୍ତି କାହିଁକି ?

ବାବୁଅ—କେଜାଣି ? ତୁମେ କହିପାରିବ ଦେଈ ?

ଛପ୍ପା—ନାଁ ତ ।

ବାବୁଅ—ହିଁ, ଜାଣିଲି ଯେ ! ତୁମେ ମତେ ଲୁଚଉଚ । ଅଚ୍ଛା, ଛପ୍ପା ଦେଈ, ତୁମେ ଯଦି ଆମ ବାବୁଙ୍କୁ ବାହା ହୁଅନ୍ତ ସେ ଭାରି ଖୁସି ହୁଅନ୍ତେ । ଆମେମାନେ ଭାରି ଖୁସି ହୁଅନ୍ତୁ । ବାହାଘର ଦିନ ଆମେ ସବୁ ଶୋଭାଯାତ୍ରା କରି କେମିତି ଚାଲନ୍ତୁ ଦେଖିବ ? (ମାର୍ଚିଂ କରି ଦେଖାଇଲା )

ଛପ୍ପା—ଯାଃ, ତୁ ଭାରି ଦୁଷ୍ଟ, ଆଜିଠୁଁ ତୋ ସାଙ୍ଗରେ ମୋର କଥାବାର୍ତ୍ତା ବନ୍ଦ, ଯା—

ବାବୁଆ—ହେଲେ, ମୁଁ ଛାଡ଼ିବି ନାହିଁ, ପଛରେ ଗୋଡ଼େଇ ଗୋଡ଼େଇ କହିବି, "ତୁମେ ଆମ ବାବୁଙ୍କୁ ବାହା ହୁଅ, ସେ ତୁମକୁ ଭାରି ସୁଖ ପାଆନ୍ତି"—(ଛାୟା ଧରିବାକୁ ଗଲାରୁ ସେ ପଳାଇ ଗଲା ଭିତରକୁ । ବାବୁଆ ଗଲାପରେ ଛାୟା ଚାରିପଟକୁ ଚାହିଁ ଭ୍ୟାନିଟି ବ୍ୟାଗ୍ ଭିତରୁ ନିଜର ଫଟୋଖଣ୍ଡିକ କାଢ଼ି, ଅତି ସନ୍ତର୍ପଣରେ ଜହରର ଫଟୋ ନିକଟରେ ରଖି ମନେ ମନେ ମୁରୁକି ହସିବାକୁ ଲାଗିଲା, ପଛଆଡ଼ୁ ଜହର ଧୀରେ ଧୀରେ ପ୍ରବେଶ କଲେ )

ଜହର—(ସହଜ ଗଳାରେ ) ତୁମେ ମୋ ଉପରେ ଅତ୍ୟାଚାର ଆରମ୍ଭ କରିଚ ଛାୟା ! ସେ ଦିନର ସେଇ ଘଟଣା ପରେ ତୁମ ସାଙ୍ଗରେ ମୋର ଜଣାଶୁଣା ହୋଇଚି । ତା'ପରେ ଦୁଇଥର ପାଇଁ ତୁମେ ମତେ ଆଜି ଇଙ୍ଗିତ ଦେବାକୁ ଯାଉଚ ଯେ ତୁମେ ମୋ ଉପରେ ପ୍ରତିପତ୍ତି ବିସ୍ତାର କରିବାକୁ ଚାହଁ ।

ଛାୟା—ଅର୍ଥାତ୍ ?—

ଜହର—ଦୁନିଆର ପ୍ରତ୍ୟେକ ଅବିବାହିତା ଯୁବତୀ ଯାହା କରନ୍ତି ତୁମେ ତାହାହିଁ କରିଚ, କିନ୍ତୁ ଏତେ ଶୀଘ୍ର ନିଜକୁ ହସାଇ ବସନାହିଁ, ଛାୟା ! ତୁମେ ବାଟକୁ ଫେରିଯାଅ, ଗୋଟାଏ ଫାଙ୍କା ମଞ୍ଚରେ ଦୌଡ଼ିବାର ଚେଷ୍ଟା କରନାହିଁ; ଝୁଣ୍ଟି ପଡ଼ିବ, ଆଘାତ ପାଇବ !

ଛାୟା—କିନ୍ତୁ ଭଲ ପାଇବାର ଅଧିକାର ସମସ୍ତଙ୍କର ଅଛି, ଜହର ବାବୁ !

ଜହର—ଭାଙ୍ଗିପଡ଼ିବାର ଦୁର୍ବଳତା ମଧ୍ୟ ତୁମର ଅଛି ଛାୟା ! କାରଣ ତୁମେ ସ୍ତ୍ରୀ । ଆଜି ଯାହାକୁ ତୁମେ ଭଲ ପାଇବ ବୋଲି କହୁଚ, ସେ ହୁଏତ ଗୋଟାଏ କେବଳ ଖିଆଲ । ଏର ବାସ୍ତବ ଜହର ନିକଟରେ ତାର କିଛି ମୂଲ୍ୟ ନାହିଁ ।

ଛାୟା—ଜଣେ ସ୍ତ୍ରୀର ଭଲ ପାଇବାକୁ ଆପଣ କଣ ଏତେ ତୁଚ୍ଛ ମନେ କରନ୍ତି ?

ଜହର—ତା'ର କାରଣ, ମୁଁ କେବେ ତା'ର ମହତ୍ତ୍ୱର ସନ୍ଧାନ କରିନି। ତୁମେ ଏ ଭୁଲ କାହିଁକି କଲ ଛାୟା ? ତୁମ ପ୍ରତି ମୋର ଯେଉଁ ଉଚ୍ଚ ଧାରଣା ଥିଲା, ତା'ର ବଶବର୍ତ୍ତୀ ହୋଇ ମୁଁ ତୁମକୁ ଏଠାକୁ ଆସିବାର ଅବାଧ ସ୍ୱାଧୀନତା ଦେଇଥିଲି; ପାଇ ତୁମେ ମୋର ସେଇ ସରଳ ବିଶ୍ୱାସର ସୁଯୋଗ ନେଇ କାହିଁକି ଏ ସର୍ବନାଶ କରିବାକୁ ଗଲ ଛାୟା ?

ଛାୟା—ଜହର ବାବୁ ! ଆପଣ ଅବିବାହିତ ଯୁବକ, ମୁଁ ଅବିବାହିତା ଯୁବତୀ—

ଜହର—ଠିକ୍ ତୁମରି ମୁହଁର ଏଇ ଗୋଟାଏ କଥା ଦେଶବ୍ୟାପୀ ମୋର କୁତ୍ସା ରଟନା କରିବ ! ତୁମେ ବିବାହିତା ହୋଇ-ଥିଲେ ମୋର ଦୁଃଖ ନଥିଲା। କୁହୁକିନୀ ଏଇ ନାରୀ ଜାତି—ଜାଣି ଶୁଣି, ମୂର୍ଖ ମୁଁ, ତୁମ ଚରିତ୍ରର ଉଦାରତାରେ ବିଶ୍ୱାସ ରଖିଥିଲି। ସେଥିପାଇଁ ତୁମେ ଆଜି ମୋର ମନୁଷ୍ୟତାରେ କଳଙ୍କର ଛାପ ମାରିଦେବାକୁ ଯାଉଛ !

ଛାୟା—ଦେବତାଙ୍କୁ ପୂଜା କରିବାର ଅଧିକାର ସମସ୍ତଙ୍କର ଅଛି, ଜହରବାବୁ !

ଜହର—ଦୁର୍ବଳତା ଲୁଚାଇବାର ଚେଷ୍ଟା କରନା ଛାୟା—ତୁମେ ବୁଦ୍ଧିମତୀ, କିନ୍ତୁ ତୁମର ଯୁକ୍ତି ଏକାବେଳେକେ ଅବାନ୍ତର। ଦେବତା କିଏ ? ମାଟିର ପଣ୍ଟିଏ ତୁମେ ଦେବତା ପ ଭଲ ବୋଲୁଛ ? ତା ଅପେକ୍ଷା ବରଂ କହିପାରିଥାନ୍ତ, "ଜହର ବାବୁ ! ମୁଁ ଆପଣଙ୍କୁ ଭଲ ପାଏ, ମୋର ହୃଦୟ ଦେଇ"—

ଛାୟା—(ବାଧାଦେଇ) ସ୍ତ୍ରୀ ହୃଦୟର ବ୍ୟଥା ଆପଣ ବୁଝନ୍ତି ନାହିଁ, ହୃଦୟ ଦେଇ ଭଲ ପାଇବା ତାର ଚରିତ୍ରର ବିଶେଷତ୍ୱ ।

ଜହର—ଅବିବାହିତା ଯୁବତୀର ବ୍ୟଥା ମୁଁ ବେଶ୍ ବୁଝେଁ । ଯେ-କୌଣସି ମୁହୂର୍ତ୍ତରେ, ଯେ କୌଣସି ଅପଦାର୍ଥକୁ ମଧ୍ୟ ସେ ତା'ର ହୃଦୟ ଦେଇପାରେ ! ମାତ୍ର ସେଇଟି ତାର ଦୁର୍ବଳତା । ଯୌନ-ବିଜ୍ଞାନ ମତରେ ବୁଝାଅ ନାହିଁ, ଛାୟା ! ମୁଁ ତୁମଠୁଁ ଭଲ ପାଇବାର ତତ୍ତ୍ୱ ଶିଖିବାକୁ ଚାହେଁନା ।

ଛାୟା—ଜହରବାବୁ ! (ଉତ୍ତେଜନାରେ କିଛି କହି ପାରିଲା ନାହିଁ)

ଜହର—ହଁ, ଏତିକି କେବଳ ଜାଣି ରଖିଲେ ଯଥେଷ୍ଟ ହେବ ଯେ ଜହର କେବେ ଅମୃତର ଆସ୍ୱାଦ ଦେଇପାରେନା କିମ୍ବା ଦେଇ ଶିଖିନି ! ତାର ମାତ ଓ ପନ୍ନା ସବୁବେଳେ ସମାନ !

ଛାୟା—(ଶତ ଶତ ଚାବୁକ୍ ଯେମିତି ବାଜିଲା ତାଟି) ଆହତକୁ ଆଘାତ ଦବାରେ ଆପଣଙ୍କର ଆନନ୍ଦ ! ଆପଣ ନିଷ୍ଠୁର ! ଆପଣ ହୃଦୟହୀନ !

ଜହର—ସେଇଆ ଜାଣିମଧ୍ୟ ତୁମେ ନିଆଁକୁ ଡେଇଁ ପଡ଼ିଲ କାହିଁକି ? କାହିଁକି ଛାୟା ? କାହିଁକି ତୁମେ ଜୀବନ ଯଜ୍ଞରେ ଏ ଆହୁତି ଦବାକୁ ଗଲ ? ଏ ପ୍ରାଣବଳୀରେ ତୁମର ନାରୀତ୍ୱର ମର୍ଯ୍ୟାଦା ବଢ଼ି ଉଠିଲା ନାହିଁ—ତୁମେ ଦୁର୍ବଳ ହୋଇ ବସିଲ ! ନାରୀତ୍ୱର ସର୍ବଶ୍ରେଷ୍ଠ ଦାନ ଭଲ ନିରର୍ଥକଭାବରେ କାହିଁକି ଅର୍ପଣ କଲ ଛାୟା ? କାହିଁକି ପୂଜା ପୁଷ୍ପକୁ ଗୋଟାଏ ନିଷ୍ଠୁର, ବିପ୍ଳବୀ ହାତରେ ତୋଳିଦେଲ ?

ଛାୟା—ନିଷ୍ଠୁର ଭାବରେ ସମାଲୋଚନା କରନ୍ତୁ ନାହିଁ, ଜହର ବାବୁ ! ମୁଁ ଜାଣେ, ମୋର ପୂଜା ନିଷ୍ଫଳ ହେବ । ମନଭରସ କଣ୍ଠରେ ମୁଁ ଆପଣଙ୍କର ପ୍ରେମଭିକ୍ଷା କରିବାକୁ ଯାଉନି । ଏ ଉପେକ୍ଷା

ମୋର ନାରୀ ଜୀବନର ପରାଜୟ ନୁହେଁ ! ସେଇ ପରାଜୟ ଭିତରେ ଅଛି ଉତ୍ସର୍ଗର ମହତ୍ତ୍ୱ ! ରାଜପୁତର ଶୁଭ୍ର ଟୀକା ! କାରଣ ପ୍ରତିଦାନର ଆଶା ରଖି, ରକ୍ତ ମାଂସର ଆବରଣ ନେଇ ସ୍ନିଗ୍ଧା ତା'ର ତୁଚ୍ଛ ଦେହ ଦେବାକୁ ଜହର ବାବୁଙ୍କୁ ଭଲପାଇନି । ଭକ୍ତିର ଅର୍ଘ୍ୟ ନେଇ ସେ ଦେବତାଙ୍କୁ ଭଲ ପାଇଛି ! (ପ୍ରବଳ ଉତ୍ତେଜନାରେ ଫେରିଯିବାକୁ ବସିଲା )

ଜହର—ଠେଇଁଥାଅ ସ୍ନିଗ୍ଧା, ତୁମେ ଉତ୍ତେଜିତା !

ସ୍ନିଗ୍ଧା—ନା, ଧନ୍ୟବାଦ !

ଜହର—( ବାଧାଦେଇ ) ଶୁଣ ସ୍ନିଗ୍ଧା, ମୋର ଆଦର୍ଶ ନେଇ ତୁମେ ଖଣ୍ଡାଧାରରେ ବାଟ ଚାଲି ପାରିବ ? ଦେଶ ମା' ପ୍ରତି ଆମର ଯୋଉ କର୍ତ୍ତବ୍ୟ, ତୁମେ ହାତକୁ ହାତ ମିଳେଇ ମତେ ସାହାଯ୍ୟ କରିପାରିବ ? ଯୋଉ ଭକ୍ତିର ଅର୍ଘ୍ୟ ଦେଇ ତୁମେ ମୋର ପୂଜା କରିବାକୁ ଯାଉଚ, ସେଇ ଅର୍ଘ୍ୟ ଦେଇ ତୁମେ ( ମହାତ୍ମାଜୀଙ୍କ ପ୍ରତିକୃତି ଦେଖାଇ ) ଏଇ ମହାପୁରୁଷଙ୍କର ପୂଜା କରିପାରିବ ? ( ସ୍ନିଗ୍ଧାକୁ ହଲାଇ ଦେଇ ) ଉତ୍ତର ଦିଅ—ଉତ୍ତର ଦିଅ—

ସୁଧାଂଶୁ—( ହଠାତ୍ ପ୍ରବେଶ କରି ) ସେ ଉତ୍ତର ମୁଁ ଦେବି ଜହର ! ସ୍ନିଗ୍ଧା ମୋର ଭଉଣୀ, ତାକୁ ଏଭଳିଭାବରେ କଦର୍ଯ୍ୟ ଇଙ୍ଗିତ ଦେବାର ଜବାବ ତୁମେ ମୋଠୁଁ ପାଇବ ।

ଜହର—ତାର ମାନେ ? ( ପ୍ରବେଶ କଲା ହେମନ୍ତ )

ସୁଧାଂଶୁ—ରୋମିଓ ଜୁଲିଏଟ୍‌ର ଅଭିନୟଟି ଅତି ସୁନ୍ଦର, ଚମତ୍କାର ! ଏ କଣ ହଉଚି, ଜହର ? ତୁମେ ଭୁଲି ଯାଉଚ, ସ୍ନିଗ୍ଧା ମୋର ଭଉଣୀ !

ଜହର—ଆପଣ ଭୁଲ୍ ଯ୍ଷଡ଼ଯନ୍ତ୍ର ଏଇଟା ଭଦ୍ରଲୋକର ଘର ! ଗୋଟାଏ ମିଥ୍ୟା ଅଭିଯୋଗରେ ନିଜର ଭଉଣୀକୁ ଅଭିଯୁକ୍ତ କରିବା ନିତାନ୍ତ ଅମନୁଷ୍ୟତା ।

ସୁଧାଂଶୁ—ତୁମର ଅମନୁଷ୍ୟତା ଧରା ପଡ଼ିଯାଇଛି । ସେ ଅବଶ୍ୟ ତୁମର ଦୁର୍ଭାଗ୍ୟ । ତଥାପି ଉପାୟ ଅଛି ଜହର ! ତୁମର ଏ କଳଙ୍କର କାଳିମା ଲିଭାଇବାକୁ ତୁମେ ଛାୟାକୁ ବିବାହ କରିପାରିବ ?

ଜହର—ସୁଧାଂଶୁ ବାବୁ !......

ଛାୟା—ଭାଇ ! ସୀମା ଲଙ୍ଘନ କରନାହିଁ । ଜହର ବାବୁ ଦେବତା । ତାଙ୍କର ଅସମ୍ମାନ କରିବା ତୁମର ମୂର୍ଖତା ।

ସୁଧାଂଶୁ—ଚୁପ୍ କର । ନୀତିଶିକ୍ଷାର ଦରକାର ନାହିଁ ଛାୟା । ତୋର ଅଧୁନିକତାର ମାତ୍ରା ବଢ଼ିଯାଇଛି! ଅଭିଜାତ୍ୟର ହୋସ୍ ତୋର ମୋଟେ ନାହିଁ ! ରକ୍ଷା ହେଉଛି, ତୁ ମୋର ନିଜର ଭଉଣୀ ନୋହୁଁ, ନହେଲେ ମୋର ଖାନ୍‌ଦାନ୍‌ର ଅପମାନ ସହି ନ ପାରି ମୁଁ ଅଜି ଜହରକୁ ଖୁନ୍ କରି-ଦେଇଥାନ୍ତି ।

ଜହର—ତାର ମାନେ ?

ସୁଧାଂଶୁ—ଗୋତ୍ରହୀନ, କୁଳହୀନ ଗୋଟିଏ ଛୋଟ ଶିଶୁ; ବାପା ତାକୁ ସ୍ଥାନ ଦେଇଥିଲେ ଆମର ଘରେ । ସୌଭାଗ୍ୟ-କ୍ରମେ ସେଇ ବାଳିକା ଅଜି ଉଚ୍ଚ ଶିକ୍ଷିତା, ପରମା ସୁନ୍ଦରୀ ଛାୟା; ଯାହା ପାଖରେ ଜହର ବି ହାରିପଡ଼ୁଛି ।

ହେମନ୍ତ—ସୁଧାଂଶୁ ବାବୁ ! ଆପଣଙ୍କର ଭଉଣୀଟିକୁ ନେଇ ଆପଣ ବଡ଼ାଇ କରନ୍ତୁ । ଅନ୍ୟ କୌଣସି ଉଚ୍ଚ କୁଳରେ ମୁଦ୍ରା

ଏଠ ଯେମିତ ପଦାର୍ପଣ ନ କରନ୍ତୁ, ସେଇ କଥାଟା ମୁଁ ଅଗରୁ ଜଣେଇଦବାକୁ ବାଧ୍ୟ ହଉଚ ।

ଜହର—ମ୍ୟାନେଜର !

ହେମନ୍ତ—ହଁ ଅଜ୍ଞା; ଛୁଡ଼ାହେଇ ଅଭିନୟ ଦେଖୁଥିଲି, ଅଜ୍ଞ ପାରିଲି ନାହିଁ ।

ଜହର—ନା, ହେମନ୍ତ, ତୁମେ ଯାଅ ।

ସୁଧାଂଶୁ—ନା, ଜହର, ଗୁଲିଯାଉଚ ମୁଁ । ଦୁଃଖ କରନା ବନ୍ଧୁ । Bachelor ଜୀବନରେ ଦେଖାଦଏ ଏମିତ ଅନେକ ଅନେକ romance ପୁଣି କେତେ ମଧୁର ସମ୍ଭାବନା ଛାଇପରି ମିଳେଇଯାଏ । ଏଥିରେ ଦୁଃଖ କରିବାର କିଛୁନାହିଁ ଅ, ଛାୟା—   ( ଛାୟାକୁ ଟାଣି ଟାଣି ନେଇଗଲେ )

ହେମନ୍ତ—ଅଜ୍ଞା —

ଜହର—ତୁମେ ଘାବ୍ଡ଼ି ପଡ଼ନାହିଁ ହେମନ୍ତ, ମଣିଷ ଜୀବନରେ ଏ ଗୋଟାଏ ଗୋଟାଏ ଅତି ମାମୁଲି ଧକ୍କା । ଗୁଲ ତୁମର Office ଭିତରକୁ ।   (ହେମନ୍ତ ସହିତ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

—ଧନଶ୍ୟାମଙ୍କ ଘର ଅଗଣା—

[ ଜୀର୍ଣ୍ଣଶୀର୍ଣ୍ଣ ବେଶରେ ଛୁଡ଼ାହୋଇ ହଜିଲା ଦିନର କଥା ଭାବୁଥିଲା ରାଧା—ବିଧବା ରାଧା—ସମବେଦନାରେ ଭରି-ଉଠୁଥିଲା ପ୍ରାଣନାଥର ପ୍ରାଣ—ସେ ଛୁଡ଼ା ହୋଇଥିଲା ତାର ମୁହଁକୁ ଗୁହିଁ ]

ପ୍ରାଣ—ନୂଅବୋଉ !

ରାଧା—ନାଥ ଭାଇ ! ନୂଆବୋଉ ତାଙ୍କ ମତେ ଅଳ୍ପ ଦୁଃଖ ଦଅ ନାହିଁ । ହତଭାଗୀ ପୋଡ଼ା କପାଳୀ ରାଧା ବୋଲି ଡାକ ।

ପ୍ରାଣ—ପ୍ରକୃତିର ନିଆଁଗୁଡ଼ାକ ଭଳି ବେଳେବେଳେ ଏହି ଜୀବନକୁ କଲବଲ କରି ଜାଳିପୋଡ଼ି ମାରନ୍ତି, ରାଧା ! ସବୁବେଳେ ମନରେ ତୋର ଦୁଃଖ, ଅଶାନ୍ତି, ତା ଉପରେ ପୁଣି ଗଞ୍ଜଣା ।

ରାଧା—ଜଳି ପୋଡ଼ି ମରିବାକୁ ମୋର ଜନ୍ମ ହୋଇଥିଲା ନାଥ ଭାଇ !

ପ୍ରାଣ—ସତେଇରେ ରାଧା ! ଭାରି ଦୁଃଖୀ ତୁ ! ତତେ ବୁଝେଇ କହିବାକୁ ମୋର ଆଉ କିଛି ନାହିଁ । ଦୁଇବର୍ଷ ତଳେ ଜ୍ୟୋତି ଆଉ ମୁଁ ତତେ ଯୋଉଭାବରେ ଦେଖିଥିଲୁ, ଏଇନେ ତାର କିଛି ନାହିଁ ! ଦେହ ତୋର କଳାକାଠ ପଡ଼ିଯାଇଛି । ତୁ ବଦଳି ଯାଇଛୁ । ଶୁଣ ରାଧା ! ଜ୍ୟୋତି ସାଙ୍ଗରେ ତୋର ବାହାଘର ହେଲା ପରେ ପରେ, ତୁ ଯେତେବେଳେ ସବାରିରେ ବସି ଏଇଘରକୁ ଆସିଲୁ, ନୂଆବୋଉ ବୋଲି ପ୍ରାଣ ମୋର ମମତାରେ ପୂରି ଉଠିଥିଲା ।

ରାଧା—ଆଜି ସେ ମମତା ଟିକକ କଣ ନାହିଁ ନାଥଭାଇ ?

ପ୍ରାଣ—ଅଛି ରାଧା ! ଚିରଦିନ ରହିଥିବ ।

ରାଧା—ମୁଁ ଜାଣେ, ନାଥଭାଇ ( ଟିକିଏ ଭାବି ) ଆଉ, ନାଥଭାଇ ! ତୁମେ ମୋର ଗୋଟାଏ କାମ କରିପାରିବ ? ମତେ ଟିକିଏ ଜହର ଆଣି ଦେଇପାରିବ ?

ପ୍ରାଣ—ରାଧା ! କଣ କହୁଛୁ ତୁ ! ( ଶିହରି ଉଠିଲା )

ରାଧା—ହଁ ଭାଇ ! ମୁଁ ଏ ଅଲୋଡ଼ା ଜୀବନ ରଖିବାକୁ ଚାହେଁନା ।

ପ୍ରାଣ—ହେଲେ ତୁ ଯାହା କହୁଛୁ, ତାଠୁଁ ବଳି ପାପ ଆଉ ସଂସାରରେ ନାହିଁ । ନା ରାଧା, ମୋରାଣି, ତୁ ଭାଙ୍ଗି ପଡ଼ନା । ସଂସାରରେ ତୋର କର୍ତ୍ତବ୍ୟ ସରିନାହିଁ ।

ରାଧା—ବଞ୍ଚିଥାଇ କଷ୍ଟ ସହିବା କଣ ଖାଲି ମୋର କର୍ତ୍ତବ୍ୟ ?
ନାଥଭାଇ ! ତୁମେ ଭୁଲ୍ ବୁଝିଚ । ଯାହାର ଜୀବନର
କିଛି ଦାମ ନାହିଁ, ସଂସାରେ ସେମିତି ଗୋଟାଏ ଅନାଥିନୀ
ବିଧବାର ବଞ୍ଚିବାର ଦରକାର କଣ ? ତା'ର ମରିଯିବାଇ
ଶତଗୁଣେ ଭଲ । ମୁଁ ଖାଲି ବଡଠାକୁରଙ୍କୁ ଦିନ ରାତି
ସେଇ କଥା କହୁଚି—'ଠାକୁର ହେ ! ମୋର ଜଲଦି
ମରଣ ହଉ । ତୁମେ ମତେ ତାଙ୍କର ପାଖକୁ ନେଇଯାଅ ।
ଦୁନିଆର ବୋଝ ହୋଇ ମୁଁ ବଞ୍ଚି ରହିବାକୁ ଚାହେଁ ନା ।'

ପ୍ରାଣ—ଛି, ତୁନି ହୋ ରାଧା ! (ପାଖକୁ ଯାଇ ଲୁହ ପୋଛିଦବାକୁ ବସିଲେ )

ରାଧା—( ଘୁଞ୍ଚିଗଲେ ପାଖରୁ ) ଘୁଞ୍ଚିଯାଅ ନାଥଭାଇ, ମୁଁ ବିଧବା । ମୋ
ପାଖକୁ ଆସିଲେ ମୋ ନିଶ୍ୱାସରେ ତୁମର ଅମଙ୍ଗଳ
ହବ । ଯେ ହତଭାଗୀ, ତା'ଠୁ ଦୂରରେ ଦୂରରେ ରହିବା ଭଲ ।

ପ୍ରାଣ—ରାଧା !

ରାଧା—ହିଁ ତୁମେ ଚାଲିଯାଅ, ମୋ ପାଇଁ ଦୁଃଖ କରି ଲାଭ ନାହିଁ ।
ଦୁନିଆ ବାଟରେ ମୁଁ ଅଛି ଭିକାରିଣୀ—ଅତି ଏକା,
ମୋର କେହି ନାହିଁ, ନିଜର ବାପ ଭାଇ ନାହାନ୍ତି, ସ୍ୱାମୀ
ନିଜର ହେଲେ ନାହିଁ, ଶାଶୁ ଶ୍ୱଶୁର ପର କରିଦେଲେ ।
ତୁମେ ଚାଲିଯାଅ । (ପିଅରମଣି ପ୍ରବେଶ କଲେ )

ପିଅର—ନାହିଁ, ଚାଲିଯିବ କାହିଁକି ? ଥାଉ ଥାଉ ଏବେ ତ ଖୁବ ସୁବିଧା
ହେଇଚି । ତିନିଦିନ ହେଲା ବୁଢ଼ା ଶଶୁରଟା ଘରେ ନାହିଁ,
ବାର ବାଟରେ ମୁଁ ଇଆଡ଼େ ସିଆଡ଼େ ଯାଉଚି । ଘରେ ଆଉ
କିଏ ଅଛି କି ତୁମର ଏ ନାଟ ଦେଖିବାକୁ ?

ରାଧା—ବୋଉ !

ପ୍ରାଣ—ବଡ଼ମା ! ତୁମେ କଣ ପାଗଳ ହେଲ ନା କଣ ? ବୋହୂଟା ଉପରେ ଦନସ୍ତ ଖଡ଼ି ଖଡ଼ି ହେଇ ମନ ମାନୁନ ? ଅଧୁର—

ପିଅର—ଚୁପ୍ କର ! ତୁ ଭାର କିଏ ? ଭାଇ ନା ବନ୍ଧୁ ? ମଢେ ଅଖି ଦେଖେଇବାକୁ ଅସିଚୁ ? ଜାଣେରେ ଜାଣେ, ଏଥର ଛଢେ ବାଗ ପଡ଼ିଛି । ହଇରେ ନାଥିଆ, ହଇରେ ହେ, ବଧବା ବୋହୂଟା ସାଙ୍ଗରେ ଏ ବେଭାର କରବାକୁ—

ପ୍ରାଣ—( ରାଧାର ଦୁଃଖ ସହ୍ୟ ନପାର ରାଗରେ ) ବଡ଼ମା ! ତୁମେ ମଣିଷ ନୁହଁ । ଗୋଟାଏ ଡାହାଣୀ, କଞ୍ଚା ଡାହାଣୀ ! କେତେ ପର ପୁଅଙ୍କୁ ଖାଇଚ, ରାଧାକୁ ଖାଇଲେ ତୁମର ପେଟ ପୂରିବ ! ତୁମର ମତଲବ ମୁଁ ବହୁତ ଦନ ଅଗରୁ ବୁଝିଛି, ତୁମ ମାଷ୍ଟାସରେ କେହି ଉଧିରବେ ନାହିଁ ।

ପିଅର—( ହାତରେ ଗୋଟାଏ ବାଡ଼ି ଧର ଛୁଟି ଅସିଲେ ) କଣ୍ଣ କହିଲୁରେ ନାଅଁ ଗିଲା ! ମୁଁ କଞ୍ଚା ଡାହାଣି ? ( ମାରବାକୁ ଗଲ, ନାଥ ବାଡ଼ିଟା ଛଡ଼ାଇ ନେଲ )

ପ୍ରାଣ—ତୁସିଅର ବଡ଼ମା, ମରଦପୁଅ ମୁଁ, ରାଗିଗଲେ ମୋର କାହୁ ବାଛ ବଗୁର ରହବ ନାହିଁ । ( ଧଗ୍ୟାଥରେ ପିଅରମଣି ଝୁଣ୍ଟି ପଡ଼ଲେ )

ରାଧା—( ନାଥଙ୍କୁ ବାଧାଦେଇ ) ନାଥଭାଇ ! ମୋ ରାଣ, ମୋ ମୁଣ୍ଡ ଖାଅଛି ! ତୁମେ ଚାଲିଯାଅ । ମତେ କଲବଲ କର ମାରବାକୁ ଥିଲ ଦନେ ଏଠିକି ଅସନା, ତୁମେ ଚାଲିଯାଅ ( ନାଥଙ୍କୁ ଠେଲି ବାହାର କରଦେଲ ଓ ବାପଘର ଦାଗରୁ ସାଇ-ମାଇପେ ଦଜଣ ଅସିଲେ )

ରାଧା—ବୋଉ !

ମାଳ—କଣ ହେଲାଁକ ବୋହୂ ?

ପିଅର—( ଚଳେ ପଡ଼ି ମୁଣ୍ଡ ବାଡ଼େଇ କାନ୍ଦଲେ । ଜାଣି ଜାଣି ମୁଣ୍ଡ ଫଣ୍ଡିଅ କରି ରକ୍ତ ବୁହାଇଦେଲେ ) ତମେ ସଭିଏଁ ଦେଖୁଚ ଟି ? ମୋର ସାକ୍ଷୀ ଥା । ହଁ ଭଗବାନ ବି ମୋର ସାକ୍ଷୀ ଅଛନ୍ତି । ମୋ ମାଅଲେ, ମୋ ମାଅଲେ···ଏ ରାଣ୍ଡୀ ମତେ ସେ ବାଡ଼ରେ ବାଡ଼େଇ···ହେଇଟି ମୋ ମୁଣ୍ଡ ଅଡ଼େ ଗୁହିଁ ।

ମନୁ—ମଲ, ମଲ, ଏବେ ଚକତ ? ( ଉଠାଇଲେ ) ;

ରାଧା—ମୁଁ ମାରେ ଟି ? ବୋଉ, ଏ କଥା ତୁମେ କହିଲ !

ପିଅର—( ଛେଟି କୁହି କି ନନ୍ଦନ ସ୍ୱରେ ) ଅଲ ମୁଁ କଣ ମିଛରେ କହୁଚ ? ଅଲେ, ଅଖି ଫୁଟିଯିବ ଲେ, ଦେହ ହାତରେ ପୋକ ପଡ଼ିଯିବେ ଯଦି ମୁଁ ତାହା ନାଁରେ ମିଛ କହୁଥିବି । ମୋ ମାଅଲେ—ରେଣ୍ଡୀ, ଅଣ୍ଟୁକୁଡ଼ୀ, ସବାଖାଇର ଏତେକ ଗୁଣ ? ଦେଣ୍ଡା ନାଥିଅଟା ସାଙ୍ଗରେ ଯୋଉ ହସ, ଖେପି—ଚେଲ, ନକଲ— ଛି, ଛି, ଛି, ଏ ଅଖି ଦେଖିବ ନାହିଁ କି ଏକଥା କାନ ଶୁଣିବ ନାହିଁ । ମୁଁ ଏବେ ସେଇକଥା କହିଲି ବେଳକୁ ନାଥିଅ ବୁଢ଼ିରେ ମତେ ଏଇ ଦଣ୍ଡ ଦେଇଚ । ହଉ, ସେ ଅସନ୍ତୁ । ସବୁ ଅଖିରେ ଦେଖିବେ ଯେ !

ମାଳ—ମୋ ମାଲେ ! ସତକି ମ ! ଛି, ଛି, ଛି, ଅଲେ ଶରଧା ବୋଉ, ଅମର ପଳେଇବା, ଏ ଡାହାଣୀ କେମିତ ଅନେଇଚ ଦେଖୁନାହଁ ? ଛି, ଛି, 'କାନରେ ଏ କଥା ଶୁଣିବା ବି ପାପ ! ଅଖି ଯାହା ଦେଖି ନ ଥିଲି, ଦେଖିଲି ଅଛି । ( ଧଡ଼ପଡ଼ ହୋଇ ଦୁଇଜଣ ପଳେଇଲେ )

ରାଧା—( ପାଖକୁ ଯାଇ ) ବୋଉ ! ଘରକୁ ଚାଲ । ତୁମ ମୁଣ୍ଡରୁ ରକ୍ତ ବୋହୁଛି, ମୁଁ ଔଷଦ ଲଗାଇ ଦେବି । ମୋ ରାଣ, ତୁମେ ଘର ଭିତରକୁ ଚାଲ । ସକାଳୁ ଏ ପର୍ଯ୍ୟନ୍ତ ତୁମେ କିଛି ଖାଇନ ।

ପିଅର—ମଲା ଲୋ ମେର ! ସୋରେହ୍ଵା କଥାଗୁଡ଼ାକ ରଖି-ଦେଇଥା । ଏଡ଼େ କୁଦାଘ୍ନ କେବେଠୁ ହେଲୁ ମ ? ଜାଣିଛି ଲୋ, ସବୁ ଜାଣିଛି । ନାଥିଅ ସାଙ୍ଗରେ ଯୋଗ୍ରି ଫୁସୁରୁ ଫାସର, ହିପୁରୁ ଚାପର ମୋ ମନରୁ ଯିବନାହିଁ ମ ! ତୁ ଯେତେ ବାଗରେ ଭୁଆଁଇଲେ କଣ ହବ ? ମୁଁ ତ ବଣ୍ଟା ଡାହାଣୀ, ସେଇକଥା ଏବେ ହେଲ—

ରାଧା—ବୋଉ ! ମୁଁ ତୁମର ବାଂଧବା ବୋହୁ, ମୋ ନାଁରେ ମିଛରେ ଅପବାଦ ଉଠେଇବାକୁ ତୁମର—

ପିଅର—କଣ କହୁଲୁ ? ହେଲେ ହେଲ, ବେଶ ହେଲ । ଆମର ଭଲ ମଣିଷ ହବା ଦରକାର ନାହିଁ । ତୁ ଏ ଖରାପ ଲୋକଘରୁ ଆଜ ନିକଲି ହେଇଯା । ଏକ୍ଷିଣି ତୁ ଥିବ ଘରୁ ଗଲେ ମୁଁ ଅଜ ଜଳ ଛୁଁଇବି—ନାହିଁତ ମୋର ଝିଅପିଅ ସବୁ ବନ୍ଦ । ସେ ଅସନ୍ତୁ କେତେଦିନେ ଅସିବେ । ଅସିଲେ କଥାଟା ମୁକାବିଲା ହବ । ସେଇଠୁଁ ମୁଁ ଖାଇବି । ଅଜ ମୁଁ ନିୟମ ପକେଇ କହୁଚି ମୋର ଯେବେ ଛାଇଲି ଯିବ, ମୁଁ ତୋର ଜଞ୍ଜାଳରେ ମର ଗ୍ଲୁଣ୍ଡ ଚାଲିଯିବି । ଏଇ ମୋର ଶେଷକଥା ! ହିଁ !

ରାଧା—ତେବେ ଘରୁ ଯିବେ ନାହିଁ, ବୋଉ ! ସମସ୍ତେ ବାହାରେ । ଏ ଘର ଯେମିତି ଚାଲୁଛି ସେମିତି ଚାଲିବ ।

ପିଅର—କଣ କହୁଚୁ ଲେ ହାରାମଜାଦ ? ଏ ଘରେ ସବୁଦିନେ ଏଇ ପାପ ଲାଗିବ ? ତା ହବ ନାହିଁ । ମୁଁ ନାଥିଅକୁ ଗୌରବଥ ହାତରେ ବଢେଇବି । ଏଇକ୍ଷଣି ତୁ ଅଗ ବାହାର । ( ମାରିଲା, ରାଧା ପଥର ପରି ଛିଡ଼ା ହୋଇଥାଏ )

ରାଧା—ମୁଁ କୁଳର ବୋହୂ, ଘରର ବୋହୂ । ମତେ ଏ ଘରୁ ବାହାର କରିଦବାର ଅଧିକାର କାହାରି ନାହିଁ ।

ପିଅର—କାହାରି ନାହିଁ ? ଓଁ, କଣ ହାର ଜବରଦସ୍ତି ? ଅଚ୍ଛା ! କେମିତି ନ ଯିବୁ ଦେଖିବି ! ( ଅଧିକ ମାଡ଼ ଦେଲେ ) ଯା, ବାହାର ମୋ ଘରୁ, ଛତରରେ ମାଗିଖାଇବୁ ଯା । ଅଲ୍ଲ କାହାଘରେ ପଶିବୁ ଯା । ମୋର ବଡ଼ବଡ଼ୁଅ ଘରେ ଏସବୁ ଲୁଚୁଚୋରି ପାପ ଚଳିବ ନାହିଁ । ଗାଁସାରା ଛିଃ ଛିଃ ହେଇ ବାଜିଲଣି; ତୁ ଲୁଚେଇଲେ କଣ ହବ ଲେ ? ପାପ କୋଉ କାଳେ ଲୁଚି ରହେ ?

ରାଧା—ମାଡ଼ ଖାଇ ମରିଗଲେ ବି ମୁଁ ଯିବିନାହିଁ, ତା ଛଡ଼ା ଯିବି ବା କେମିତି ? ସ୍ୱାମୀଙ୍କର ସଂସାର—ଏଇ ମାଟି ମୋର ତୀର୍ଥ ! ଏ ତୀର୍ଥ ଛାଡ଼ି ମୁଁ ଯାଇ ପାରିବି ନାହିଁ । ଏଇଠି ମରିଗଲେ ମୋର ଧର୍ମ, ମୋର ମୁକ୍ତି ! ( ଗୋଡ଼ ଧରି ) ବୋଉ ! ତୁମେ ମତେ ତଡ଼ି ଦିଅନା । ମୁଁ ଏ ଘର ଛାଡ଼ିଯାଇ ପାରିବି ନାହିଁ । (ପିଅର ଗୋଡ଼ରେ ଠେଲି ଦେଲା ସେ ପଡ଼ିଗଲା) ଏଇ ମାଟି ମୋର ଶ୍ରୀକ୍ଷେତ୍ର । ( ମାଟି ମୁଠାଏ ହାତରେ ଧରି ମୁଣ୍ଡରେ ବୋଳି ହୋଇ ) ଏଇ ଧୂଳି ମୋର ଚନ୍ଦନ । ଏସବୁ ଛାଡ଼ି ମୁଁ କୁଆଡ଼େ ଯିବି ବୋଉ ?

ପିଅର—ବୁଡ଼ି ମରିବୁ ଯା । ସେଇଥିରେ ତୋର ମୁକତି ହବ । ତୋ'ପରି ଅଲକ୍ଷଣି ଏଠି ରହିଲେ ପାପର ଲାଥରେ ଏ ଘର

କଳଯିବ । ସେଥିରେ ଘର, ଦ୍ୱାର, ମଣ୍ଡପ, ପଣ୍ଡୁ, ଦେବତା, ଠାକୁର ସବୁ ଜଳ ପାଣ୍ଡୁଣ ହୋଇଯିବେ । ତୋର ଏ କଞ୍ଚା ବୟସ ଅଳ ଚଳଚଞ୍ଚଳ ରୂପର ଝାସରେ ସମସ୍ତେ ଜଳ ପୋଡ଼ ମରିବେ । ତୁ ଯା—ବାହାରିଯା ମୋ ଆଖି ସାମନାରୁ ।

ରାଧା—ନା, ମୁଁ ଯିବିନାହିଁ—ଯିବିନାହିଁ—ଯିବି ନାହିଁ, ତୁମର ଯାହା ଖୁସି କର । ମତେ ହାଣ, କାଟ, ମାର ମୁଁ ସହିବି । ହେଲେ ମୋ ସ୍ୱାମୀଙ୍କର ଘର ମୁଁ ଛାଡ଼ି ପାରିବି ନାହିଁ, ଜାଣି ଜାଣି ଏତେବଡ଼ ଘରର ଅକଲ୍ୟାଣ ମୁଁ କରିପାରିବି ନାହିଁ ।

ପିଅର—ହୁଁ, ଅଚ୍ଛା ! ( ହାତ ଧରି ରାଧାକୁ ଘୋସାଡ଼ି ନେଲେ )

ରାଧା—(କାନ୍ଦି କାନ୍ଦି) ଜୋର କରି ମତେ ଛାଡ଼ି ଦିଅନା ବୋଉ, ଛାଡ଼ି ଦିଅନା—ଉଃ, ଭଗବାନ !

ପିଅର—ଚୁପ୍‌କର ହାରାମଜାଦୀ ! ଗୁଳ ଦାଣ୍ଡିପିଣ୍ଡାରେ ପଡ଼ି ଭଗବାନଙ୍କୁ ଡାକିବୁ ।

( ବହୁ କଷ୍ଟରେ ଟାଣି ଟାଣି ନେଇଗଲେ । ରାଧା କାନ୍ଦୁଥାଏ । ଦୂରରୁ ଭାସି ଆସୁଥାଏ ଏକ କରୁଣ ସ୍ୱରର ମୂର୍ଚ୍ଛନା )

---

## ଚତୁର୍ଥ ଦୃଶ୍ୟ

(ସନେଇ ପଧାନର ଗୃହ-ସମ୍ମୁଖ । ସିନ୍ ଉଠିଲାପରେ ଦେଖାଗଲା ସନେଇ ହାତରେ ଠେଙ୍ଗାଧରି ପିକାଟାଏ ଟାଣୁ ଟାଣୁ ଘରୁ ବାହାରି ଆସିଲା )

ସନେଇ—ଅଣିଲୁ ନା ନାହିଁମ ?

ଇନ୍ଦୁ—(ଭିତରୁ ) ନଜାଣ ରୁହ । (ପ୍ରବେଶ କରି) କଣ ଆଜି ଏତେକ-ବେଳୁ ଆଖଡ଼ାକୁ ଯାଉଚ ? (ଗୃହର ଖଣ୍ଡ ଦେଇ) ଭଲକରି

ଘୋଡ଼େଇ ପୋଡ଼େଇ ହେଇ ଯାଅ । ନାଇଁତ ଉଙ୍ଗା ପଡ଼ଅ ଧଡ଼୍, ଥଣ୍ଡା କାକର ଲଗିଲେ ଫେର ଜର ଓଲଟି ପଡ଼ିବ ।

ସନେଇ—ଦେ, ଦେ, ଥଣ୍ଡା ଲଗିଯାଉଛି ! ଯେତେସବୁ ଅଗତ-ଭବଷ୍ୟ ମାଇକିନିଅଙ୍କୁ କଣା—

ଇନ୍ଦୁ—କଣ ହେଲା କ ଅଜ ? ମୋ ଉପରେ ଗ୍ରାସ୍ ବଗ ଯେ—

ସନେଇ—ଖାଲି ତୋ ଉପରେ ନୁହେଁ, ତୁମ ଜାତି ଉପରେ । ଇମିତ ସଇତାନ ଜାତି ସେଇଟା, ଅଖି ପିଛୁଳାକେ ଧଳାକୁ କଳା କର ଥୋଇଦେବେ । କହନ୍ତି ପର୍, କଣ୍ଟା ଡାହାଣୀ ବୋଲି ।

ଇନ୍ଦୁ—କଥାଟାକୁ ବଙ୍କେଇ କହିଲେ ମାଇପିଲେକ ମୁଁ, ବୁଝିବି କେମିତି ?

ସନେଇ—ଏଇ, ତୋର ଗୁଣର ସଙ୍ଗାତ କଥା କହୁଛି । ପେଟ ଭିତରେ ଗୋଟାଏ କଥା ଅଜ ମୁହଁରେ ଗୋଟାଏ କଥା । କେତେସ୍ତ ପରବାର କେଇଟା ଦନ ଯାଇନାଇଁ, ଗୁଣ ଫୁଟି ଉଠିଲାଣି । ହେମିତି ଲୋକଙ୍କ ମୁହଁ ଗୁହିଁବା ନାଇଁ । ଅଗରୁ ତ ସଙ୍ଗାତ ସଙ୍ଗାତ ବୋଲି ଦହିଙ୍କର ପାଣି ଗଳୁନଥିଲା । ଏବେ ଯାଉନୁ ସଙ୍ଗାତ ଟାଖକୁ କାଣ୍ଡ କାରଖାନା ଦେଖି ଅସନ୍ତୁ ।

ଇନ୍ଦୁ—ମଲା, ମୁଁ କଣ ଯାଉ ନଥିଲି ନା ଯିବନାଇଁ ମ ? ଏବେ ସିନା ତା'ର କପାଳ ଫାଟିଲା ବୋଲି ମୁହଁ ଗୁହିଁବା ଡରେ ଯାଉନାଇଁ ।

ସନେଇ—ଓ, ସଧବା ମାଇପେ ବଣ୍ଡୀଚଣ୍ଡୀଙ୍କ ମୁହଁ ଗୁହିଁଲେ ପାପ ଲେଖିବ ପର୍ । ହଉ, ହଉ, ବୁଝିଲି, ପାକମା ! ତୋ ସଙ୍ଗାତ ରାଧା ଏବେ ତା ଦେଖିଲା କାମ କଲାଣି । ଅଗରୁ ଯୋଉ ନାଥିଅ ଖବର ଶୁଣା ଥିଲା···ସେ ଏବେ ଅଖି

ଦେଖିବା କଥା । ଶାଶୁ ତାର ନିଜେ କେତେ ଥର ଦେଖିଲଣି । ଏଇନେ ଗାଁ ଭିତରେ ସମସ୍ତେ ସେଇକଥା ଚୁପୁରୁ ଚାପୁରୁ ହଉଚନ୍ତି । ମାଧବନନା କହୁଲେ କି ତାର ଶଶୁର ବୁଢ଼ା ସହରରୁ ଫେରିଲେ ଗାଁପଞ୍ଚାଏତ ତାରି ଚୋଟେ ବିନାଶ କରଦେବେ ।

ଇନ୍ଦୂ—ଯିଏ ଯାହା କରିବ, ସିଏ ତା ଫଳ ପାଇବ । ଆମର କଣ ଅଛି ? ତୁମେ ସେ ପଞ୍ଚାଏତ ପଞ୍ଚାଏତକୁ ଯିବନାହିଁ । ଆମର ଦୁଃଖୀଘର, ଗାଁ ମାମଲତରୁ କଣ ମିଳିବ ?

ସନେଇ—ହଉ ତୁଁ ଛାଟି ଅଜଳେଇ ଯା' । ମୁଁ ଅଖଡ଼ାକୁ ଯାଉଚି, ସେଠି ବା ବୋଧହୁଏ ସେଇ ବାସ୍ତୁର ପଡ଼ିଥିବ । (ପ୍ରସ୍ଥାନ) (ସନେଇ ଗଲା ପରେ ପରେ ଇନ୍ଦୂ ସେଇଅଡ଼କୁ ଗୁହିଁ କରୁଛି ସମସ୍ତ ଛୁଡ଼ାହେଲା । ଅଦୂରେ ଗ୍ରାମମନ୍ଦିରର ଆରତି, ଶଙ୍ଖ, ଘଣ୍ଟା-ଧ୍ୱନି ଶୁଭିଲା । ଇନ୍ଦୂ ଠାକୁର ଉଦ୍ଦେଶ୍ୟରେ ପ୍ରଣାମଟିଏ କରି ଘର ଭିତରକୁ ଯାଇ ଛାଟି ଅଜଳେଇ ଦେଲା । ଏତିକିବେଳେ ଧୀରେ ଧୀରେ ପ୍ରବେଶ କଲା ରାଧା )

ରାଧା—(ଛାଟିରେ ହାତମାରି) ସଙ୍ଗାତ— !

ଇନ୍ଦୂ—(ଭିତରୁ) କିଏ ? (ରାଧାର ଡାକ ଶୁଣି ମଧ୍ୟ ଛାଟି ଖୋଲିଲା ନାହିଁ । )

ରାଧା—ସଙ୍ଗାତ, ମୁଁ !

ଇନ୍ଦୂ—ଏତେବେଳେ କୁଆଡ଼େ ଆସିଲୁ ମ ?

ରାଧା—ତୋର ଘରକୁ ଆସିଚି । ଚୁପିରେ ଆସିବି ଆସିବି ବୋଲି କେତେଥର ଗୋଡ଼କାଢ଼ି ଆସିପାରି ନାହିଁ, ଆଜି ବିପଦରେ ପଡ଼ି ଏମିତି ଅବେଳରେ—

ଇନ୍ଦୂ—ବିପଦ କଣ ?

ରାଧା—ତୁ ଛାଡ଼ି ଛାଡ଼, ସବୁ ଜାଣୁଛ, ଆମଘରେ ଭଉଣୀମାନଙ୍କପାଳି ରାଧା ପାଇଁ ଆଜ ଥାନ ନାହିଁ । ବୋଉ ମୋତେ ମାଡ଼ମାରି ଘରୁ ତଡ଼ି ଦେଇଚନ୍ତି । ଯେତେ ଗୋଡ଼ ହାତ ଧରି ନେହୁରି ହେଲି, କାନ୍ଦିଲି, ସେ ଶୁଣିଲେ ନାହିଁ । ସଙ୍ଗାତ, ଆଜ ରାତିଟା ତୋର ପାଖରେ କଟିଗଲେ କାଲି ବାପା ସହରରୁ ଫେରିବେ— ତୁ ଛାଡ଼ି ଛାଡ଼ ।

ଇନ୍ଦୁ—ନାହିଁ ସଙ୍ଗାତ, ତୋର କରମ ଫାଟିଛି । ମୁଣ୍ଡରୁ ସିନ୍ଦୂର, ହାତରୁ ଶଙ୍ଖା ଯାଇଛି । ମୁଁ ତୋର ମୁହଁ ଚାହିଁବା ବିଧି ନୁହେଁ । ଆଜ ତୁ ଜୋଜଠିକି ଯା !

ରାଧା—ସଙ୍ଗାତ ! ତୁ......

ଇନ୍ଦୁ—ମୁଁ କଣ କରିବି କହ ଭଉଣି ? ଦୁଃଖୀ ଘର । ପିଲାପିଲି ଦୋ'ଟି ଅଛନ୍ତି । ତାଙ୍କ ମୁହଁକୁ ତ ଫେର ଅନେଇବି ! ଏକଥା ଶୁଣିଲେ ସାଇବାଲା ଆମ ବାସ ରଖିବେ ନାହିଁ ।

ରାଧା—ଏଡ଼େ ବିପଦରେ ତୁ ମୋର ସାହା ହବୁ ନାହିଁ, ସଙ୍ଗାତ ?

ଇନ୍ଦୁ—ଯାହା କହୁଛୁ କହ ପଛେ, ମୁଁ କଣ କରିବି ! ସେ ଘରେ ନାହାନ୍ତି—ମୁଁ ମାଇପିଲେଟି· ·

ରାଧା—ଯାହାର କପାଳ ଫାଟେ, ଭଗବାନ ତାର ବିପକ୍ଷ ! ହଉ !

ଇନ୍ଦୁ—କୁଆଡ଼େ ଯିବୁ ?

ରାଧା—ଯୁଆଡ଼େ ପାଦ ଦିଟା ନେଇଯିବ । କିଛି ନହେଲେ ମରି ପାରିବିତ !

ଇନ୍ଦୁ—ହିଁ ସଙ୍ଗାତ, ସେଇଆ କର । ଏତେ ପାପ କରିଚୁ । ପୋଡ଼ା ଜୀବନଟା ଥାଇ କଣ ହବ ?

ରାଧା—ପାପ ! (ଚମକି ପଡ଼ିଲା) ବିଧବା ହବା କଣ ପାପ ?

ଇନ୍ଦୁ—ନାହିଁ ବିଧବା ହେଇ ପରପୁରୁଷ ସାଙ୍ଗରେ—

ରାଧା—ସଙ୍ଗାତ ! ଚୁପ ହେ ।

ଇନ୍ଦୁ—ହଁ, ଭଉଣି ! ଝାଇଝାଗ୍ ସମସ୍ତେ ଶୋଉଛନ୍ତି। ହଉ ତୁ ଯା, ପିଲା ଦି'ଟାଙ୍କୁ ଏକା ଶୋଇ ଦେଇ ଆସିବି...

ରାଧା—ସଙ୍ଗାତ ! ସଙ୍ଗାତ ! ନାଃ......( ଇନ୍ଦୁର ଶବ୍ଦ ଶୁଭିଲାନି )

ପ୍ରାଣ—(ପ୍ରବେଶି) ନାଃ, ସଙ୍ଗାତ ତା ଦୁଃଖରେ ଚାଲିଗଲାଣି। ଦୁଃଖବେଳେ କେହି କାହାର ନୁହନ୍ତି ରାଧା ! ଏ ସଂସାରର ନିୟମ ! ହଁ, କୁଆଡ଼େ ଯାଉଛୁ ତୁ ?

ରାଧା—କିଛି ଠିକ୍ ନାହିଁ, ତୁମେ ଯାଅ। ସେ କଥା ବୁଝି ତୁମର କିଛି ଲାଭ ନାହିଁ। ଇନ୍ଦୁ ମୋର ପିଲାଦିନର ସାଙ୍ଗ। ଦହେଁ ସଙ୍ଗାତ ବସିଥିଲୁ। ଏକା ଗାଆଁରେ ବାହାହୋଇ ଦି ଭଉଣୀ ପରି ଚଳୁଥିଲୁ। ସେଇ ଇନ୍ଦୁ ବି ମୋ ଆଡ଼କୁ ଫେରି ଚାହିଁଲା ନାହିଁ। ତୁମେ ଯାଅ। ମତେ କିଛି ପଚାର ନାହିଁ।

ପ୍ରାଣ—ବୁଝିଲି, ଜୀବନ ହରେଇ ଦେବୁ ତ ?

ରାଧା—ମତେ ଯୋଉ ବୁଦ୍ଧି ଦିଶିବ, ମୁଁ ସେଇଆ କରିବି। ମୋ ପଛରେ ତୁମେ ଆସ ନାହିଁ। ଗାଁବାଲା ଦେଖିଲେ ତୁମର ଖରାପ ହେବ।

ପ୍ରାଣ—ରାଧା ! ମୋ କଥା ଶୁଣ। ଜାଣିଶୁଣି ଆତ୍ମହତ୍ୟା କରିବା ଠିକ୍ ନୁହେଁ, ତୁ ମୋର ସାଙ୍ଗରେ ଚାଲ। ତତେ ମୁଁ ସହରକୁ ନେଇଯିବି। ସେଠି କେତେ ଆଶ୍ରମ ଅଛି ଯୋଉଠି ରହି ତୁ କିଛିହେଲେ କରିପାରିବୁ।

(କଥା ନସରୁଣୁ ରାଧା ଚାଲିଯାଇଥିଲା। ପ୍ରାଣନାଥ ରାଧା ରାଧା ଡାକି ତା ପଛରେ ଚାଲିଗଲା )

———

## ପଞ୍ଚମ ଦୃଶ୍ୟ

—ସୁଧାଂଶୁର ଘର—

( ସିନ୍ ଉଠିଲା ପରେ ପରେ ଦେଖାଗଲା ଛାୟା ଗାଉଛି ଗୀତ୍,
ପଛରେ ଛିଡ଼ାହୋଇ ଶୁଣୁଛି ପ୍ରୀତି )

ନହେଲା ନାହିଁ ଏ ଜୀବନେ ଦେବତା
ମୋ ସୁଖ ସପନ ରଚନା,
ଜନମେ ଜନମେ ଏହି ସାଧ ଲଭେ ତବ ପାଦତଳେ ଲାଞ୍ଛନା —
ରହିଗଲା ଯାହା ଅନ୍ତର ଅନ୍ତରାଳେ,
ଅବଜ୍ଞାତ ନିତ ଅଶ୍ରୁ କୁସୁମ ଦଳେ—
ଚିର ବାନ୍ଧିଛି ଦଅ ଅବହେଳା ବଞ୍ଚିଛାରେ ନାହିଁ ଶୋଚନା ।

ପ୍ରୀତି—( ଛାୟାର ଗୀତ ପରେ ) ଭାଇଙ୍କ ପଛରେ ଚାଲିବ ନାହିଁ ଛାୟା । ଖସଡ଼ାରେ ଗୋଡ଼ ବଢ଼େଇଲେ ଓଟଡ଼ା ଖାଇବାକୁ ହୁଏ । ସେଥିପାଇଁ ଅଜ ଯେମିତି ଗୋଡ଼ ନ ଖସେ, ତା'ର ଚେଷ୍ଟା କରିବା ଦରକାର । ପୂର୍ବରୁ ସାବଧାନ ନ ହୋଇ ତୁ ଅଜି ଏ ବିପଦରେ ପଡ଼ିଚୁ । ପ୍ରକୃତରେ ଜହରକୁ ଜହର ଭାବିବାକୁ ତୋର ଉଚିତ ଥିଲା ।

ଛାୟା—ପ୍ରତିଦାନର ଅଶା ନେଇ ମୁଁ ତ ତାଙ୍କୁ ଭଲ ପାଇ ନ ଥିଲି । ପ୍ରୀତିର ଅର୍ଘ୍ୟ ନେଇ ମୁଁ ଦେବତାଙ୍କର ପୂଜା କରିଥିଲି ।

ପ୍ରୀତି—କିନ୍ତୁ ଦେବତା ଯେ ପଥର, ସେ କଥା ତୋର ଜଣା ନଥିଲା ? ଯୋଉଠି ପ୍ରାଣ, ସେଇଠି ପ୍ରେମ ଅଜି ଛଳନା । ପ୍ରାଣ ସୃହେ ବଞ୍ଚିବାକୁ, ପ୍ରେମ ସୃହେ ମରିବାକୁ ଅଥଚ ମରେ ପ୍ରାଣ— ଅଜି ବଞ୍ଚେ ପ୍ରେମ ! ଛଳନାର ପରାଜୟ ହୁଏ ସେଇଠି । ସେଦିନ ତତେ ମୁଁ କହିଥିଲି, ଅଜି ବି କହୁଛି, ଭାଇଙ୍କ

ପଢ଼ିଲେ ହବନାହିଁ । ତତେ ବଞ୍ଚିବାକୁ ହବ ଅଜ ତୋର ନାରୀତ୍ୱର ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିବାକୁ ହବ ।

ଛାୟା—କଣ କହୁଚୁ ତୁ ?

ପ୍ରୀତି—ହଁ ଛାୟା ! ଯେ ତୋର ଭଲ ପାଇବାର ଅମର୍ଯ୍ୟାଦା କରିଚି, ତୋର ନାରୀତ୍ୱକୁ ଉପହାସ କରି ଠୋକ୍କର ଦେଇଚି, ତାର ଶାସ୍ତିମତ ଶିକ୍ଷା ଦରକାର । ଜଣେ ସରଳା ବାଳିକାର ପ୍ରାଣରେ ଆଘାତ ଦେଇ, ଯେ ତା'ର ନିବେଦିତା ଫୁଲାଫୁଲ୍‌କୁ ପାଦରେ ଦଳି ଦେଇଚି, ଗୋଟାଏ ଜୀବନର ଦାମ୍ ଯେ ବୁଝେଁ ନା, ସେ ଲକ୍ଷକୋଟି ପ୍ରାଣରେ କି ଆଶ୍ୱାସନା ଦେଇପାରେ ? ଲୋକ-ସେବା ତାର ଭଣ୍ଡାମି ! ଦେଶ-ସେବା ତାର ଅହଙ୍କାର !

ଛାୟା—ପ୍ରୀତି—

ପ୍ରୀତି—ତୋ ଯାଗାରେ ମୁଁ ହେଇଥିଲେ ତୁନିହେଇ ବସି ଅଖିରୁ ଲୁହ ଗଡ଼ାନ୍ତି ନାହିଁ । ମୁଁ ଶାସ୍ତିମତ ଯୁଦ୍ଧ ଘୋଷଣା କରନ୍ତି । ଜଘନ୍ୟ ପଶୁଟବୋଲି ଅପମାନ କରିବାକୁ ମୋର କୁଣ୍ଠା ଅସନ୍ତା ନାହିଁ ।

ଛାୟା—ଜହର ବାବୁଙ୍କୁ ତୁ ଭୁଲ ବୁଝିଚୁ ପ୍ରୀତି ! ତାଙ୍କ ଲେଖାରେ ମୁଗ୍ଧ ହେଇ ତାଙ୍କ ପାଙ୍ଗରେ ଘନିଷ୍ଠତା କରିବା ମୋର ଭୁଲ । ମୋ ଜୀବନର ଝଡ଼ ମୁଁ ନିଜେ ଉଠେଇଚି । ମୋ ଦୁଃଖ ତୁ ବୁଝିବୁ ନାହିଁ—

ପ୍ରୀତି—ବେଶ ବୁଝେଁ ଭାଇ, ବେଶ୍ ବୁଝେଁ । ଅଜ ତା'ର ବୁଝାମଣା କରିବାକୁ ମତେ ଥରେ 'ଧୂମକେତୁ ପ୍ରେସ'କୁ ଯିବାକୁ ହବ । ବଡ଼ୁବା ଜହରକୁ ମୁଁ ଥରେ ସାମନା ସାମନି ଭେଟିବାକୁ ଚାହେଁ ।

ଛାୟା—କଳି କରିବାକୁ ଯିବୁ ତ ?

ପ୍ରୀତି— ତୁ ଡରନା, ମୁଁ ଭଦ୍ରଲୋକଙ୍କୁ ହଠାତ୍ ଭଲପାଇ ବସିବନାହିଁ । ତୋପରି ଦୁର୍ବଳ ହୃଦୟ ନେଇ ମୁଁ ଯିବନି ଛାୟା ! ପୁରୁଷ–ଜାତି ପାଖରେ ସ୍ତ୍ରୀଜାତିର କିଛି ମୂଲ୍ୟ ଅଛି କି ନା ମୁଁ ଖାଲି ଏଇ ଉତ୍ତର ନେଇ ଫେରିବି । ମୋ ସାଙ୍ଗରେ ଯିବୁ ଛାୟା ? ଗଲେ ମଜାଟା ଦେଖି ଆସନ୍ତୁ ।

ଛାୟା—ଛି ପ୍ରୀତି ! ସବୁଦିନେ ତୋର ଏଇ ପାଗଳାମି ଗଲନାହିଁ । ତୁ ଯେ ସତରେ କଣ, ବୁଝି ହୁଏନା ।

ପ୍ରୀତି—ତାର କାରଣ ଭଲ ପାଇବାର ରଙ୍ଗିନ୍ ସ୍ୱପ୍ନ ନେଇ, ମୁଁ ନିଜକୁ ହରାଇ ବସେନା । ଆଜି ଶେଷରେ ଠୋକ୍କର ଖାଇ ଭାଙ୍ଗି ପଡ଼ିବାର ପ୍ରବୃତ୍ତି ମଧ୍ୟ ମୋର ଆଦୌ ନାହିଁ ।

ଛାୟା—କିନ୍ତୁ ସାରା ଜୀବନ ତୁ କଣ ଏଇଖେଳ ଖେଳିବୁ ପ୍ରୀତି ? ନାରୀ ଜୀବନର ଶାନ୍ତି କଣ ଏଇ ଖିଆଲରେ ମିଳିପାରିବ ?

ପ୍ରୀତି—Oh, dear ! ତୁ କଣ ଭାବୁଚୁ, ମୁଁ ତୋରି ପରି ହଠାତ୍ ଜଣକୁ ଭଲପାଇ କାନ୍ଦି କାନ୍ଦି ମରିବି ?

ଛାୟା—ଯାଉ ସେ କଥା—ମତେ ଥଟ୍ଟାକରି ତୁ ଯେବେ ଆନନ୍ଦ ପାଉଚୁ ବୋଲି ମନେ କରୁଚୁ, ମୁଁ ବାଧା ଦେବିନି । ହେଲେ ତୁ ଜାଣିନୁ ପ୍ରୀତି, ମୋ ଜୀବନରେ ଯୋଉ ଅଦିନ ଝଡ଼ ଉଠିଛି···ତାର ଆଜି ବିରାମ ନାହିଁ···

ପ୍ରୀତି—ବେଶ୍, ତୁ ସେଇ ଝଡ଼, ତୋଫାନ କଥା ଭାବୁଥା···ମୁଁ ଜହର ବାବୁଙ୍କ ପାଖରୁ ଫେରିଲେ ତୋ ସାଙ୍ଗରେ କଥାବାର୍ତ୍ତା । ତେବେ ଏତିକି ଅନ୍ତତଃ ଜାଣିରଖ, ବନ୍ଧୁ ହିସାବରେ ମୁଁ ତୋର କିଛି ନା କିଛି ଉପକାରରେ ଆସିବି ।
( ପ୍ରସ୍ଥାନ )

ଛାୟା—କିଛି ସମୟ ପରେ 'ଜହର' ବହିଖଣ୍ଡିକ ନେଇ ଓଲଟ ପାଲଟ କରିବାକୁ ଲାଗିଲା ; ପ୍ରବେଶ କଲେ ସୁଧାଂଶୁ )

ସୁଧାଂଶୁ—ଫେର୍ ସେଇ ବହିଖଣ୍ଡିକ ମେଲାଇ ବସିଲଣି ନା ? ମୋର ଖାନ୍ଦାନ୍ ବଂଶରେ କାଳି ବୋଳି ସେଦିନ ଯେ ଲୋକଟେ ଚରମ ଅପମାନ ଦେବାକୁ କୁଣ୍ଠାବୋଧ କଲେନି, ତାର ବହିଖଣ୍ଡିକ ପଢ଼ିବାକୁ ଇଚ୍ଛା ହୁଏନା ?

ଛାୟା—ଜହର ବାବୁଙ୍କୁ ଅପମାନ କରୁଛ ତୁମେ ! ତାଙ୍କ ଚରିତ୍ରରେ କଳଙ୍କ ବୋଳିବାର ଚେଷ୍ଟା କରୁଛ ତୁମେ !

ସୁଧାଂଶୁ—ଜହର୍ ଗୋଟାଏ villain ! ଆଜି ସହରର ପ୍ରତ୍ୟେକ ଖବର କାଗଜ ତାର କଳଙ୍କ ରଟନା କରିବାରେ ଉନ୍ମୁଖ ହୋଇଛନ୍ତି । କେତେଟା ଦିନ ଭିତରେ ସହରର ପ୍ରତ୍ୟେକଙ୍କ ନିକଟରେ ଜହର ଅପ୍ରିୟ ହୋଇଉଠିବ । ଦେଶବାସୀଙ୍କ ଆଖିରେ ଜହର ହବ କଳଙ୍କର ଗୋଟାଏ ଜୀବନ୍ତ ଅଭିଶାପ !

ଛାୟା—ସେ କଳଙ୍କ ବୋଳିଚ ତୁମେ ! ତାଙ୍କର ନିନ୍ଦାବାଦ ମୂଳରେ ତୁମର ହାତ ଅଛି । ଚୌଧୁରୀଙ୍କର ଖାତିର୍‌ରେ ତୁମେ ତାଙ୍କର ସର୍ବନାଶ କରିବାକୁ ଯାଉଛ । କିନ୍ତୁ ମନେ ରଖ ଭାଇ ! ଦିନେ ଏହାର ବିଷମୟ ଫଳ ଫଳିବ । ମିଛକଥା ଲୁଚି ରହିବ ନାହିଁ ।

ସୁଧାଂଶୁ—ଚୁପ୍ କର ! ମୋ ମୁହଁ ଉପରେ ଜବାବ ଦେବାର ସ୍ପର୍ଦ୍ଧା କେଉଁଠୁଁ ହେଲା ଶୁଣେ ? ଏଇ କଣ ତୋର ଆଧୁନିକତାର ପରିଣତି ? ଆମ୍ଭମାନଙ୍କର ସ୍ୱାର୍ଥ ବିରୁଦ୍ଧରେ ଜହରର ବିରାଟ ଆନ୍ଦୋଳନ ତାର ଅଧଃପତନ ପାଇଁ ଦାୟୀ । ମିଃ ଚୌଧୁରୀଙ୍କର ବ୍ୟବସାୟ ପଙ୍ଗୁ ହୋଇଛି—ଜହରର

ଅପ୍ରତ୍ୟକ୍ଷ-ସତ୍ୟବାଦୀତା ଯୋଗୁଁ । ସହରର ପ୍ରତ୍ୟେକ ଧନୀକ ବ୍ୟବସାୟୀ ଅଙ୍କ ଉତ୍ୟକ୍ତ ।

ଛାୟା—ଓ, କୁତ୍ସିତ ! ଅନେକ ଦିନ ପୂର୍ବରୁ ତୁମେ ମୋତେ ଯୋଗ୍ୟ ଅଭ୍ୟାସ ଦେଇଥିଲ, ଏବେ ସେ ଭାବ ଯବନିକା ଟାଣିଛ । ମୁଁ ତୁମର ଭଗ୍ନୀ । ଅଥଚ ଚୌଧୁରୀଙ୍କର ଖାତିରରେ ଟଙ୍କା ପାଇଁ ତୁମେ ମୋର ସର୍ବନାଶ କଲ ! ଏତେ ବଡ଼ କଦର୍ଯ୍ୟ ଶଠତା ତୁମେ କରିପାରିଲ ଭାଇ ?

ଚୌଧୁରୀ—(ଘନଶ୍ୟାମଙ୍କ ପ୍ରବେଶକରି) Congratulation Miss Mohanty ! hearty congratulation ! (ଗୋଟାଏ କେସ୍ ଛାୟାଙ୍କୁ ଦେଇ) ଏଇ ଦେଖ ତୁମ ପାଇଁ ମୁଁ କଣ ଆଣିଛି (ନେକ୍‌ଲେସ୍ ଦେଖାଇଲେ) ।

ଛାୟା—ଧନ୍ୟବାଦ ! ଉପହାରର ଦରକାର ନାହିଁ ରାୟ ସାହେବ ! ଅଯାଚିତଭାବରେ ଆପଣଙ୍କର ଏ ସହାନୁଭୂତି—

ସୁଧାଂଶୁ—ତୁ ଭିତରକୁ ଯା ଛାୟା ।

ଘନଶ୍ୟାମ—(ଚୌଧୁରୀଙ୍କ ପ୍ରତି) ଆଜ୍ଞା ମୁଁ ଯାଉଛି । ଘରୁ ଅନେକଦିନ ହେଲା ଅସିଲିଣି । ଆପଣଙ୍କର ହିସାବ କିତାବ ତ ସରିଛି । ମୁଁ ଏଥର ଯାଏଁ । (ଛାୟା ପ୍ରସ୍ଥାନ)

ଚୌଧୁରୀ—କିନ୍ତୁ ତୁମର ଜବାବ ?

ଘନଶ୍ୟାମ—ମୁଁ ପାରିବିନି ବାବୁ ! ଧାନ ଗୁଡ଼ିକ ବାରବାର ଏଣିକି ମୋଠୁଇ ହେଇପାରିବ ନାହିଁ । ଆପଣ ଅଲଗା ବନ୍ଦୋବସ୍ତ କରନ୍ତୁ ।

ଚୌଧୁରୀ—କାହିଁକି ? ପୁଅ ମରିଯାଇଛି ବୋଲି କଣ ବ୍ୟବସାୟ ବନ୍ଦ କରିବ ଘନଶ୍ୟାମ ? Very absurd ! very absurd ! କଣ କହୁଛ ତୁମେ ?

ଘନ—ଅପଣ ବୁଝିବେ ନାହିଁ ବାବୁ ! ଦୁଃଖୀ ଗରିବଙ୍କର ପେଟ କାଟି ଧାନ ଋଜଳ ବେପାର କରୁଥିଲି । ଫଳ ପାଇଲି । ଦୁଃଖୀ ବଙ୍କୀଙ୍କର ଉତପ୍ତ ନିଶ୍ୱାସ ମୋର ଉପରେ ପଡ଼ିଲା । ମୋ ଘର ଭାଙ୍ଗିଗଲା । ମୁଁ ଅଉ ପାରିବି ନାହିଁ । ମୋତେ ମାଫ୍ ଦିଅନ୍ତୁ । ଅପଣଙ୍କର ଉକରୀ ପାଇ ହିସାବ କିତାବ ବୁଝାଇବାକୁ ଅସିଥିଲି । ଏଥର ମୋ କାମ ସରିଗଲା ମୁଁ ଯାଉଛି ।

ସୁଧାଂଶୁ—ସେ କଣ ? ତୁମେ କଣ ପାଗଳ ? ଅରେ ଟଙ୍କା କେହି ଛାଡ଼େ ? ପୃଥ ମିଳିବ, ଟଙ୍କା ମିଳିବ ନାହିଁ, ଘନଶ୍ୟାମ !

ଘନ—ହଉ ଥାଅନ୍ତୁ ବାବୁ, ଦଣ୍ଡବତ । (ଚାଲିଗଲା)

ଚୌଧୁରୀ—ଜହର ସମ୍ପର୍କରେ ଗୋଟାଏ ପ୍ରସ୍ତା ଅଜକାର Paperରେ ପ୍ରକାଶ ପାଇଛି ।

ସୁଧାଂଶୁ—ସେଇ ଅମର ପ୍ରଥମ ପାହାଚ । ସିଂହ ଯନ୍ତ୍ରରେ ପଡ଼ିବାର ବେଳ ପାଖେଇ ଅସୁଛି । ପାହାଡ଼ିଅ ମୂଷା ପରି ନିଜର ଅହଙ୍କାରରେ ସେ ନିଜେ ଧ୍ୱଂସ ହବ । ତାହାରିକୁ ଅସନ୍ତୁ Rai Saheb ! ନ ହେଲେ ଛାତ୍ରୀ ଅମର କଥାବାର୍ତ୍ତା ସବୁ ଶୁଣିପାରିବ ।



# ଷଷ୍ଠ ଦୃଶ୍ୟ

## ରାଜପଥ

[ସହରର ଗୋଟିଏ ଗଳି—ସମୟ ସଂଧ୍ୟା—ଗଳିର ଉଭୟ ପାର୍ଶ୍ୱରେ ମାଳ ମାଳ ଘର—ଅଗରେ ବିଜୁଳି ଆଲୁଅ—ଘରମାନଙ୍କରୁ ନାନା-ପ୍ରକାର ବାଦ୍ୟରୋଳ ଶୁଭୁଛି—ଘୁଙ୍ଗୁରର ଶବ୍ଦ—ନାନାପ୍ରକାର ଶ୍ରାବ୍ୟ ଓ ଅଶ୍ରାବ୍ୟ କଥା ଓ ସମ୍ମିଳିତ ହାସ୍ୟରୋଳ ଭିତରେ "ବାହାବା" ଶବ୍ଦ ଭାସି ଆସୁଥିଲା । ଗଳିର କ୍ଷୀଣାଲୋକ ଭିତରେ ରାସ୍ତା ଉପରେ ଦୁଇଟି ଲୋକ ଦେଖାଦେଲେ । ଗୋଟିଏ ଯୁବକ ଅନ୍ୟଟି ଯୁବତୀ ]

ରାଧା—ଭୋଜଟିକୁ ଯିବାକୁ ହବ ନାଥ ଭାଇ, ସଞ୍ଜ ବୁଡ଼ିବାକୁ ବସିଲା ଯେ ?

ପ୍ରାଣ—ସେଇ ଯୋଉ କୋଠା ଦିଶୁଛି, ଆମକୁ ସେଇଠିକି ଯିବାକୁ ହବ ।

ରାଧା—ଜାଗାଟା ଭାରି ଖରାପ ଲାଗୁଛି ମତେ । ତୁମେ କଣ ଏଇ ଆଶ୍ରମ କଥା କହୁଥିଲ ?

ପ୍ରାଣ—ହଁ ରାଧା ! ତୋପରି ଅନେକ ସେଠି ରହନ୍ତି—ସେମାନଙ୍କ ଜୀବନରେ ଦୁଃଖ, କଷ୍ଟ, ଅଭାବ କିଛି ନାହିଁ । ଭାରି ମଜାରେ ଅଛନ୍ତି—ଭାରି ସୁଖରେ ଅଛନ୍ତି ସେମାନେ; ଦେଖିବୁ ?

ରାଧା—ବାରବାର ପୁଣି ସେଇ କଥା ନାଥଭାଇ ? ନା, ନା, ତୁମେ ଏଠୁ ଚାଲ—ଏମିତିକା ଆଶ୍ରମରେ ମୁଁ ରହିବି ନାହିଁ । (ଅଦୂରରୁ ଗୋଟାଏ ହସ ଭାସିଆସିଲା, ରାଧା ଭୟରେ ନାଥ ନିକଟକୁ ଘୁଞ୍ଚି ଆସିଲା) ନାଥଭାଇ ! ତୁମେ ଜଲ୍‌ଦି ଏଠୁ ପଳାଇ ଚାଲ ।

ପ୍ରାଣ—ନା ରାଧା ! ଆମକୁ ସେଇ କୋଠାକୁ ଯିବାକୁ ହବ ।

ରାଧା—ଏସବୁ କୋଠା କାହାର ?

ପ୍ରାଣ—କୋଠା ?...ମନସା ଜାଣିବ।...ମନସା ବାଈ ସହରର ଜଣାଶୁଣା ନାଚବାଲି।

ରାଧା—ନାଚବାଲି ! ନାଥଭାଇ ! ତୁମ ମୁଣ୍ଡ ଖରାପ ହୋଇନି ତ ?

ପ୍ରାଣ—ନା ରାଧା...ମୁଣ୍ଡ ଖରାପ ହୋଇଥିଲେ ମୁଁ ଏତେଦାନ ବଞ୍ଚି ପାରନ୍ତି ନାହିଁ।

ରାଧା—କଣ କହୁଚ ତୁମେ ?

ପ୍ରାଣ—କହୁ ନାହିଁ ରାଧା, ମୁଁ ଆଜି ଭାରି ଥକାପଡ଼ିଚି...ଆଉ କୁଆଡ଼େ ଯାଇ ପାରିବି ନାହିଁ।...ମୋ ସାଙ୍ଗରେ ସେଠିକି ଯିବାର ଇଚ୍ଛା ଯେବେ ନାହିଁ,...

ରାଧା—ନା, ମୁଁ ଯିବିନାହିଁ ତୁମେ ମତେ—

ପ୍ରାଣ—(ଟିକିଏ ହସି) ରାଧା ! ସହରର ଅବସ୍ଥା ଗଲି, ଏ ଅନ୍ଧାର ଭିତରେ ଏକୁଟିଆ ଗଲେ ତୁ ବାଟବଣା ହବୁ। ଝୁଣ୍ଟି ପଡ଼ିଲେ ଆଉ ଉଠିପାରିବୁ ନାହିଁ—ବାଧବା ହେଲେ ବି ତୋର ଯୋଡ଼ ରୂପ, ଯୋଡ଼ ବୟସ...ଏକୁଟିଆ ଚଲେ ଭାରି ବିପଦ।

ରାଧା—ନାଥଭାଇ ! (ଅନୁଯୋଗ ସ୍ୱରରେ) ଆଜି ତୁମେ ଏ କଥା କହୁଚ ? ତୁମେ କଣ ବଦଳିଗଲ ? ନାଥଭାଇ ! ମତେ ଏ ନର୍କ ଭିତରୁ ବାହାରକୁ ନେଇଚାଲ। ମୁଁ ତୁମର ସାନ ଭଉଣୀ—ମତେ ଏ ପାପ ଭିତରେ ଠେଲି-ଦେଇ ଯାଅନା। ମୁଁ ଜାଣେ ତୁମେ ତା କରିପାରିବ ନାହିଁ। ତୁମେ ମତେ ସ୍ନେହ କରୁଥିଲ। ଆଜି ଏ ଅବସ୍ଥାରେ ତୁମେ ମତେ ପକେଇ ଯାଇ ପାରନା—

ପ୍ରାଣ—ଦିନେ ଭଲ ପାଉଥିଲି—ସ୍ନେହ କରୁଥିଲି, ହେଲେ ମୋର ସେ ମନ ବଦଳି ନାହିଁ। ପ୍ରାଣନାଥ ଗରିବ, କେମାଚ ଙ୍କ ଉଦରର

ପିଲା । ସେଇଥିପାଇଁ ତୁ କେଉଁଠି କଥାରେ ରାଜି ହୋଇ ତାର ଘର ସଂସାର କରିବାକୁ ଚାଲି ଦୋହି ସାଜ । ତତେ 'ନୂଅବୋଉ' ବୋଲି ଡାକି ମୁଁ ଯେ କେତେ କଷ୍ଟ ପାଉଥିଲି, ସେ କଥା ତୁ ବୁଝିବୁ ନାହିଁ ।

ରାଧା—ନାଥଭାଇ !

ପ୍ରାଣ—(ହସି) ନାଥଭାଇ !! ତୁ ଜାଣିନୁ ରାଧା ! ସେଇଦିନୁ ମୋ ପେଟ ଭିତରେ ଯୋଉ ନିଆଁ ଜୁହୁଳି ଜୁହୁଳି ଜଳୁଥିଲା—ସେଇ ନିଆଁରେ ତୋର ସୁନାର ସଂସାର ପୋଡ଼ି ଛାରଖାର ହୋଇଗଲା—ଅଜି ତାର ଶେଷ । ତୋତେ ଏଇଠି ବହୁ ସବୁଦିନପାଇଁ କର୍ମର ଫଳ ଭୋଗ କରିବାକୁ ହବ । ମୁଁ ଏଠୁ ଫେରିଯିବି । ଅଜ ତୁ ଜଣେ ପ୍ରାଣନାଥକୁ ଗୋଡ଼ରେ ଠେଲିଦେଇ ଯୋଉ ସୁଖର ଆଶା କରିଥିଲୁ, ଶହ ଶହ ପ୍ରାଣନାଥଙ୍କର ଗୋଡ଼ଧରି ସେହୁ ବ୍ରତ ଶେଷ କରିବୁ । ଆ, ମୋ ସାଙ୍ଗରେ ।

ରାଧା—ନା-ଥ-ଭା-ଇ ! (ହାତ ଧରୁ ଧରୁ ରାଧା ତାକୁ ଚପେଟାଘାତ କରି ଖସି ପଳାଇଲା—ତା ପରେ ଅନ୍ଧାର ଭିତରେ ମିଶିଗଲା—ଅଦୂରରୁ ଭାସି ଆସିଲା ଏକ ହସ । ଠିକ୍ ଏ ରୁମ୍ ହୋଇ ରହି ପ୍ରାଣନାଥ ରାଧାର ଅନୁଗମନ କଲା । ମାଝ ବାଟରେ ଜଣେ ମାତାଲ ହସି ହସି ତାକୁ ଧରି ପକେଇଲା)

ପ୍ରାଣ—କିଏ ?

ମାତାଲ—ହାଃ- ହାଃ- ହାଃ-ଅଜି ଫାଙ୍କିଦେଇ ଯାଇ ପାରିବ ନାହିଁ ମେରେ ପ୍ୟାରେ—ମେରେ ଜାନ୍—ମୁଁ ସବୁ ଦେଖିଛି ।

ପ୍ରାଣ—କିଏ ତୁ ?

ମାତାଲ୍—ତେରେ ବାବା, ତେରେ ଚଚା,, ତେରେ ପରଦ୍ଦାଦେଙ୍କ
ନାନା ।

ପ୍ରାଣ—ଧେତ୍—

ମାତାଲ୍—ଶୋଷା ହଜଡ ଚାଉଁଛ ? ଲେ ବାବୁ ! ତୁମେ ଖୁବ
ବୁଜ୍‌ଦଲ ଅଛ ।

(ପ୍ରାଣନାଥ ତାକୁ ଠେଲିଦେଇ ସିଧାର ଅନୁସରଣ କଲା)

---

## ସପ୍ତମ ଦୃଶ୍ୟ

(ଇହାରର ପ୍ରେସ୍ ହଲ୍‌ର Hall Room)

(ସିନ୍ ହଠିଲାବେଳକୁ ଦେଖାଗଲା ଦେବକୁମାର ପାଦଚାରଣ କରୁକରୁ
ଗାଉଥିଲା ଗୋଟିଏ ଗୀତ)

ଖାଲି etiquette ଏଠି ସେଠି ଜଗି ଜଗି
ସାରା lifeଟା ବ୍ୟର୍ଥ ହେଲା ମୋର—
Murder ହେଲା ମୋର...
State Express ଧୂଅଁରେ ଧୂଅଁରେ...
ହେଲା cloudy ଆଶା ଘନ ଘୋର...
ସାରା lifeଟା ବ୍ୟର୍ଥ ହେଲା ମୋର...
Murderହେଲା ମୋର । ୧ ।

Formalityର frame ଗୋଟିହଦା,
Always conscience ରହିଲା ବାନ୍ଧ;
କଟେ ଖାଲି tedious day and night...
ନାହିଁ romance, ନାହିଁ adventure...
ସାରା lifeଟା ବ୍ୟର୍ଥ ହେଲା ମୋର—
Murder ହେଲା ମୋର । ୨ ।

ଜଣେ Studio ଫେରନ୍ତା ମାର୍କାମରା-ମୁଁ,
ନାଟ୍ୟକଳା Bachelor
ଏଇ Hopeless ଦେଶ ଅବହାର୍ଓ୍ୟାରେ
ମୋର ଗଲ ସବୁ posture, gesture…
ପୁଣି ill-luck ଜର lockedup ମୋତେ—
control କଲ ମୋର ଦର
ସାରା lifeଟା ବ୍ୟର୍ଥ ହେଲ ମୋର…।୩।

ଏଇ Friend-societyରେ ନାହିଁ intimacy,
ସବୁ Selfish, complicacy ବେଶୀ;
An up-to-date lady, sweet-sixteen…
ହାୟ-ହାୟ—
କହଲ ନାହିଁ ଧନେ, 'Oh Darling! I love you,
love you, Oh, Dear!!' ।୪।

ପ୍ରୀତ—(ଗୀତ ଶେଷରେ ପ୍ରବେଶ କରି) ବାଃ! ଚମତ୍କାର ଗାଉଛନ୍ତି ତ! ନମସ୍କାର।

ଦେବ—(ହସି ଅପ୍ରସ୍ତୁତ ହୋଇ) ମତେ ଅପଣ ଜାଣିନ୍ତି ତ Miss ? ତା ନିଶ୍ଚୟ ଜାଣିଥିବେ। ମୁଁ ଦେବକୁମାର! ଜହର ବାବୁଙ୍କର ସମାଧାନ ନାଟକର Director, ମାନେ ଷଡ୍ଯନ୍ତ୍ରକ।

ପ୍ରୀତ—ଧନ୍ୟବାଦ। ପରିଚୟ ପାଇ କୃତାର୍ଥ ହେଲି। ଶିବକୁମାର ବାବୁ! ଟିକିଏ ଅପଣଙ୍କ ପ୍ରେସ୍ ଷଡ୍ଯନ୍ତ୍ରକଙ୍କୁ ଖବର ଦେବେ ?

ଦେବ—ଅହାହା! ଶିବକୁମାର ନୁହେଁ, ଦେବକୁମାର! ବସନ୍ତୁ ନା।

ପ୍ରୀତି—Oh dear ! ବସିବ ? ମୋର ଯେ ସମୟ ଖୁବ୍ ଅଳ୍ପ । ଅଚ୍ଛା ବେଶ୍, ମୁଁ ବସୁଚି ପରନ୍ତୁ ଆପଣ କହଳବାବୁଙ୍କୁ ଟିକିଏ ଖବର ଦିଅନ୍ତୁ ।

ଦେବ—ତା ନହୁଏ ଦେବି...କିନ୍ତୁ ଆପଣଙ୍କ ନାଁଟା ଅନ୍ତତଃ—
Excuse me ! I am very sorry.

ପ୍ରୀତି—Miss. Pratima Das—ପ୍ରୀତି ଜାଣିଲେଇ ଚଳିବ ।

ଦେବ—କହଳବାବୁଙ୍କୁ କଣ ଖବର ଦେବି ?

ପ୍ରୀତି—କହିବେ, ମୋର ବନ୍ଧୁ ଛାୟା ସମ୍ପର୍କରେ ମୁଁ କିଛି କହିବାକୁ ଆସିଚି । ଅଚ୍ଛା ଥାଉ...ଖାଲି ଜରୁରି ଦରକାର ମାନେ ବହୁ ଖଣ୍ଡେ ଦୁଇ ଖଣ୍ଡ ନେବ ବୋଲି କହିବେ ।

ଦେବ—ଆପଣ ତା ହେଲେ ଛାୟାଦେବୀଙ୍କର ବାନ୍ଧବୀ ମିସ୍ ଫତୀମା ? ହାଯ୍, ହାଯ୍ !

ପ୍ରୀତି—Fatima ନୁହେଁ Pratima.

ଦେବ—Thank you very well as you like. ଅଚ୍ଛା ଖବରଟା ମୁଁ ଦେବି ; ମାତ୍ର ସେ ତ ନାହାନ୍ତି । ଅପେକ୍ଷା କରନ୍ତୁ, ବର୍ତ୍ତମାନ ହୁଏତ ଆସିଯିବେ ।

ପ୍ରୀତି—ଅପେକ୍ଷା ? ଅଚ୍ଛା ବେଶ୍ । କିନ୍ତୁ ନିତାନ୍ତ ଯେତେବେଳେ ଅପେକ୍ଷା କରିବାର କଥା, ଆପଣଙ୍କ ସାଙ୍ଗରେ ଗପିଗଲ୍ପ କରି—

ଦେବ—That's it ! I am so glad, Miss Pratima ! ତାହାହେଲେ ମୋର Direction ମାନେ ସେଇ କଥା ଅବଶ୍ୟ କରେ । ଦେଖନ୍ତୁ ଓଡ଼ିଶାରେ Film studio ଖୋଲିବା ମୂଳରେ ମୁଁ ଆପଣମାନଙ୍କ ପରି ଶିକ୍ଷିତା

ଚନ୍ଦ୍ରୀତରୁଣୀମାନଙ୍କର ସାହାଯ୍ୟ ଲୋଡ଼େ ! ଆପଣ ନାଚ ଗୀତ ଜାଣନ୍ତି ତ Miss Pratima ?

ପ୍ରୀତି—ଆପଣ ପୁଣି Film studio ଖୋଲିବାର କଳ୍ପନା କରୁଚନ୍ତି ନା କଣ ?

ଦେବ—ବିଲକ୍ଷଣ, କଳ୍ପନା କଣ ପ୍ରତିମା ଦେବି, ମୁଁ ଯେ ଅନେକ ଆଗେଇ ଗଲିଣି । କୁହନ୍ତୁ, ମୁଁ ଯାହା ପଚାରିଲି ।

ପ୍ରୀତି—ଦେଖନ୍ତୁ ଦେବକୁମାର ବାବୁ ! ଗୀତ ଗୋଟାଏ ଅଧେ ଗାଇ ପାରିଲେ ମଧ୍ୟ ନୃତ୍ୟକଳାରେ ମୋର ଅଦୌ ଦଖଲ୍ ନାହିଁ ।

ଦେବ—ଓ ! ତାହାହେଲେ ତ ଅଙ୍ଗହାନି—ଅଚ୍ଛା ଆପଣ ଠିଆ ହୁଅନ୍ତୁ ତ ?

ପ୍ରୀତି—(ଛିଡ଼ାହୋଇ) କୁହନ୍ତୁ ।

ଦେବ—(ଦେଖି) ବସନ୍ତୁ, ବସନ୍ତୁ । ଆପଣ heroine ହୋଇ ପାରିବେ କି ନା, ମୋ height ସାଙ୍ଗରେ ତୁଳନା କରୁଥିଲି । ବେଶ୍ ଠିକ୍ ହବ । ମୋର ଉଚ୍ଚତା ଟିକିଏ କମ୍ ହେଲେଓ ମୁଁ high heel ଜୋତା ପିନ୍ଧିନେବି । ଏଁ ..ଏଁ ଏଁ... I am very sorry ! ମୋର ଭୁଲ ହୋଇଯାଉଚି— ଅଚ୍ଛା ! ଗାନ୍ ଗୋଟାଏ ଶୁଣାନ୍ତୁ ତ !

ପ୍ରୀତି—ଶୁଣିବେ ନା କଣ ?

ଦେବ—ନିଶ୍ଚୟ ଶୁଣିବି—ମାନେ ହଜାର ବାର ଶୁଣିବି—ଆପଣ ଯେତେବେଳେ ଗାଇବେ, ମୁଁ ତ ଅଳ୍ପ ଦାନ ଦେଇ ଚାଲୁ ବନ୍ଦ କରି ବସିପାରିବି ନାହିଁ । ବରଂ ଚେଷ୍ଟା କରିବି ଆପଣଙ୍କ କଣ୍ଠ ସାଙ୍ଗରେ କଣ୍ଠ ମିଳେଇ ଗାଇବାକୁ । ଅସିବା ସାଙ୍ଗେ ସାଙ୍ଗେ ମୋ ସୁର୍ ଆପଣ ଶୁଣିଚନ୍ତି—ସେସବୁ ଗଳା Microphone କୁ fit କରେ । ମାନେ ମୁଁ ଜଣେ—

ପ୍ରୀତି—ଅପଣ ? ଅପଣ ଗୋଟିଏ ଗଧ—

ଦେବ—( ଚମକି ) ଏଁ !

ପ୍ରୀତି—ମୁଁ ଭାରି ଦୁଃଖିତ ! ଅପଣ ମୋତେ ଥଟ୍ଟା ବୁଝନ୍ତି ନାହିଁ ?

ଦେବ—ଓ ! ଅପଣ ତାହାହେଲେ ଥଟ୍ଟା କରୁଛନ୍ତି ? ତା ହେଉ, କରନ୍ତୁ ନା ! ଅଳାପ ପରିଚୟ ଯେତେବେଳେ ହେଇ-ଯାଇଛି···Thank God verywell as He likes—ହାୟ ! ହାୟ ! ଭଗବାନ ! ତୁମେ Prose ବି କହିବ, Poetry ବି କହିବ—ବଳିହାରି Oh God ! ତୁମେ ନ କରିବ କଣ ?

ପ୍ରୀତି—ଚମତ୍କାର ଅପଣଙ୍କର ଭାଷାମିଶ୍ରଣ—ଦେଖି ମିଶ୍ରଣଟୁଁ ବି ବଳି ପଡ଼ିଲ—ବାସ୍ତବିକ ଦେବକୁମାର ବାବୁ ! ଲୋକମାନେ ଅପଣଙ୍କ ବିଷୟରେ ମତେ ଠିକ୍ କହୁଥିଲେ, ଅପଣଙ୍କ ପରି ନିର୍ବୋଧ ପ୍ରେମିକମାନଙ୍କୁ ନଚେଇବାରେ ବେଶ ଅନନ୍ଦ ଅଛି ।

ଦେବ—( ବଦଳିଗଲେ ) ମତେ ଅପଣ ଅପମାନ କରୁଛନ୍ତି Miss Praitma Das, ମୁଁ ଦେବକୁମାର ; ମାନେ ମୋର ଅତ୍ମ-ସମ୍ମାନ ଅଛି—prestige, position—

ପ୍ରୀତି—Rubbish—ଅପଣ ଏ ଯୁଗର ମୂର୍ତ୍ତିମାନ୍ କଳଙ୍କର ଅଦର୍ଶ— ! ଅପଣଙ୍କୁ ସାମନାରେ ବସିବାକୁ Chair ଦେଇ ପଛରୁ ବାଉଁଶ ଧକ୍କା ମାରିବାରେ ଗୌରବ ଅଛି ।

( ଜହର ସେଇବାଟେ ଚାଲି ଯାଉଥିଲେ )

ଦେବ—ଦେଖନ୍ତୁ ଜହର ବାବୁ ! ଏ ଅଟକିବା ମତେ ଡସ୍ତୁରମତ ଉଗେଇ ଦେଉଚନ୍ତି—ମୁଁ ଅଜ ଏଥର ନୀତି ଶିକ୍ଷା ମାଗିବ ନାହିଁ । ମଣିଷର ତ ପୁଣି ଗୋଟାଏ ଧୈର୍ଯ୍ୟର ସୀମା ଅଛି ?

ପ୍ରୀତି—ହୁଁ ।

ଜହର—ଏ ଯୁଦ୍ଧ କରିବାର ଯାଗା ନୁହେଁ ଦେବକୁମାର ! ତୁମେ ବାହାରକୁ ଯାଇପାର ।

ଦେବ—ଭୁଲ୍ ପ୍ରତିମା ! ଯୁଦ୍ଧର ଯାଗା ଏ ନୁହେଁ ।

ପ୍ରୀତି—Shut up, you devil ! ଜହର ବାବୁ, ଆପଣଙ୍କର କର୍ମଗୃହୀମାନେ ଭଦ୍ରତାର ଧାର ଧାରନ୍ତି ନାହିଁ ।

ଜହର—ଦେବକୁମାର ! ତୁମେ ଚାଲିଯାଅ—ମୁଁ ତୁମକୁ ପରି ରହର୍ସେଲ୍ ଦେଖିଯିବାକୁ କହିଥିଲି ?

ଦେବ—ଯାଉଛି Sir ! ( ଯାଉଁ ଯାଉଁ ) ହାୟ—ହାୟ—ଖାଲି ପ୍ରବେଶ ଓ ପ୍ରସ୍ଥାନ କରି କରି ଜୀବନଟା ମୋର ଯିବ ଦେଖୁଛି—Thank God very well as He likes. ( ପ୍ରସ୍ଥାନ )

ଜହର—ଆସିବା ପୂର୍ବରୁ ଆପଣଙ୍କର କେତେଟା କଥା ମୋ କାନରେ ବାଜିଛି ପ୍ରତିମା ଦେବି ! ଆପଣଙ୍କର କଣ ଦରକାର କୁହନ୍ତୁ ତ ? ମୋର ମନେହେଲା, ଆପଣ ଯେମିତି ଆସିଥିଲେ ଦେବକୁମାରକୁ ଅପମାନ କରିବାକୁ ।

ପ୍ରୀତି— ନା ଜହରବାବୁ ! ଆପଣଙ୍କ ପାଖରେ ମୋର ଦରକାର । ଯିଏ ମୋର ବାନ୍ଧବୀ—ତାକୁ ଅଘାତ ଦେଇ, ଅପମାନିତ କରି ଆପଣ କି ପୌରୁଷ ଲାଭ କରନ୍ତି ଜାଣିପାରିବି ?

ଜହର—ଓ···( ଯିବାକୁ ବସିଲେ )

ପ୍ରୀତି—ବୁଝିଲି, ଜବାବ ଦବାକୁ ଆପଣଙ୍କର କିଛି ନାହିଁ— । ସମସ୍ତଙ୍କୁ ସମାଲୋଚନା କରିବା, ଠୋକର ଦବା ଆପଣଙ୍କର ବ୍ୟବସାୟ । ବିଶେଷତଃ ସ୍ତ୍ରୀଜାତି ପ୍ରତି ଆପଣଙ୍କର ଏ ବିରୁଦ୍ଧ ପକ୍ଷପାତିତା !

ଜହର—(ଫେରପଡ଼ି) ଅଭିନନ୍ଦ୍ର ସବୁଲ, ନା ଅଉ କିଛି ବାକି ଅଛି ?

ପ୍ରୀତି—ଜୀବନ ନେଇ ଖେଳ ଖେଳିବାକୁ ଅଭିନନ୍ଦ୍ର କୁହାଯାଏନା, ଜହରବାବୁ !

ଜହର—ପ୍ରତିମା ଦେବି ! ଅପଣ ଅପରିଚିତା—ମୁଁ ଅପଣଙ୍କର ସମସ୍ତ ନଷ୍ଟ କରିବାକୁ ଗୃହେନା ।

ପ୍ରୀତି—ଜହରବାବୁ ! ମୁଁ ଅପଣଙ୍କ ନିକଟରେ ନିତାନ୍ତ ଅପରିଚିତା, ତଥାପି ମୁଁ ଛାପ୍ସାର ବନ୍ଧୁ । ମୁଁ ଅପଣଙ୍କୁ ମିନତି କରୁଛି, ଅପଣ ସେଇ ନିଷ୍ପାପ ପୂଜା ଫୁଲଟିକୁ ମଡ଼ଳିବାକୁ ଦଅନ୍ତୁ ନାହିଁ—ସ୍ନେହ ଅଘାତରେ ଛାପ୍ସା ଭାଙ୍ଗି ପଡ଼ିଛି, ହୁଏତ ତା'ର ଜୀବନ ନଷ୍ଟ ହେଇଯିବ । ଜହରବାବୁ ! ମୋର ଅନୁରୋଧ, ଅପଣ ଛାପ୍ସାକୁ ଗ୍ରହଣ କରନ୍ତୁ । କର୍ତ୍ତବ୍ୟରେ ସେ ଅପଣଙ୍କର ସହାୟତା କରିବ । ଅର୍ଥ ନିକଟରେ ସ୍ତ୍ରୀର ଯେ କୌଣସି ମୂଲ୍ୟ ନାହିଁ, ଏ କଥା ବୁଝିବା ଅପଣଙ୍କର ଭୁଲ୍ । (ଏତିକିବେଳେ ବାହାରେ ଘନ ଘନ ମୋଟର ହର୍ଣ୍ଣ, ସମବେତ ଜନତାର ସମ୍ମିଳିତ ଅର୍ତ୍ତନାଦ ଭାସି ଅସିଲା) ଏ କଣ, ବାହାରେ ଏତେ ଗୋଳମାଳ କାହିଁକି ? ମାରପିଟ୍ ହେଲା ନା କଣ ?

( ହେମନ୍ତର ପାଟି ଶୁଭିଲା—"ବାହାରକୁ ଅସନ୍ତୁ Sir, ଶୀଘ୍ର ଅସନ୍ତୁ ।" ଜହର ଓ ପ୍ରୀତିର ପ୍ରସ୍ଥାନ )

( କିଛିକ୍ଷଣ ପରେ ଫେରିଲେ ଜହର । ହାତରେ ସଙ୍ଗହୀନ ରାଧା । ପଛରେ Driver ହେମନ୍ତ ଓ ବାବୁଅ )

ଡ୍ରାଇଭର—ହାବୁଜ ! ମୁହେଁ ଗ୍ଲେଡ଼୍ ଦଉଁଏ ।

ଜହର—ଖାମୋସ୍ ! ନାଲ୍ଲଏକ୍, ସରୁପି ବନ୍ଦିକର୍ ବେହୋଷ୍ୟାରସେ ମୋଟର୍ ଚଲାତେ ଓ୍ୟାଖ୍ତ, ଅପ୍‌ନେ ଡ୍ରାଇଭିଂକେ ଗଲ୍ତି

ଅଓର୍ ଡମ୍‌ଜୋରଥିଁପର୍ ତୁମେ ସବର୍ ନେହିଁ ଅଛ ?
ଅମିରୌଁକେ ନଜରସେ ଗିରେହୁଏ ଇନ୍ ଗରୀବୌଁକୋ ଅଗଲ୍
ବଗଲ୍ ଚଲ୍‌ନେ ଓ୍ୟାଲେ ବଗୁସେଁକେ ତରଫ୍ ତୁହ୍ମାର
ନଜା ନେହିଁ ରହତା ହୈ କ୍ୟା ? ତୁମ୍ କ୍ୟା ଜାନୋ—
ଚଲ୍‌ତି ହୁଇ ମୋଟରକୋ ପାୟେଁ।କୋ ଭାଳ୍‌ହ ? ହେମନ୍ତ !
Doctor Ghose କୁ ଖବର ଦଅ ତ । ( ହେମନ୍ତର ପ୍ରସ୍ଥାନ )

ପ୍ରୀତି—ଆଘାତ କଣ ବିଶେଷ ହୋଇଛି ?

ଜନୈକ—ନା, ଆଘାତ ବେଶି ନ ହେଲେ ବି shock ଟା ହୋଇଛି ବେଶି । ବିଶ୍ୱସ୍ତ ଖୁବ୍ ବଞ୍ଚିଯାଇଛି ।

ଡ୍ରାଇଭର—ବାବୁଜି ! ମାଫ୍ କର୍‌ଦିଜିଏ ! ବଡ଼େ ବାବୁଜିକେ ହୁକୁମ୍‌ସେ ମୈ ମୋଟର ଲେକର୍ ଷ୍ଟେସନ୍ ଯା ରହାଥା ।

ଜହର—ତୁମାରେ ବଡ଼େ ବାବୁଜିକେ ମୋଟରକେ ନୀଚେ ଅଗର ମର୍‌ନେକେ ଲିୟେ ଇନ୍ ଲୋଗୋଁକା ଜନମ୍ ନେହିଁ ହୈ । ମିଲିଟାରୀ ଟ୍ରକୌଁକେ ବରାବର ଅସି ମାଇଲ୍ ବେଗଫତାର୍‌ସେ ମୋଟର୍ ଚଲାନେକା ହୁକୁମ୍ ଉହ୍ନୋନେ ଦିଆଥା କ୍ୟା ? ଜବାବ୍ ଦୋ, ଜବାବ୍ ଦୋ ! ତୁହ୍ମେ ଡ୍ରାଇଭର ବନନେକା କିତନେ ସାଲ୍ ହୁଏ ? ଅଗର୍ ଇଏ ଔରତ୍ ମରଯାତି—?

ଡ୍ରାଇଭର—ହାମାରା କୋଇ କସୁର ନେହିଁ ବାବୁଜି ; ମୈ ମୋଟର ଲେକର୍ ଯାତେ ଓ୍ୟକ୍ତ ଜସ୍ ମୋଡ୍‌କେ ଭାଇନେ ତରଫ୍ ଜସ୍ ଲେଡିଟି ଗଲିସେ ଓ ଅଗ୍ନେକ୍ ମେନ୍‌ରୋଡ୍ ପର ଆ ପଡ଼ି, ଜିନ୍‌କେ ପିଛେ ଏକ୍ ଆଦମି ଦୌଡ଼୍‌କେ ହୁଏ ଆ ରହେଥେ । ମଗର ଓ ରୁକ୍ ଗଏ । ଅଗର୍ ମୈ ବ୍ରେକ୍ ନା ଦେତା—

ଜହର—ବ୍ରେକ୍ ନା ଦେଖା ! ତୁମ୍‌କ ବ୍ରେକ୍ ଦାଗ୍‌ଥା ତୋ ଏ accident କ୍ୟା ହୁଁୟ ? ଇତନେ ହୋନେପର୍‌ଭି ତୁମ୍‌କ ଅପ୍‌ନା ଗଲ୍‌ତ ସ୍ୱୀକାର କର୍‌ନା ନେହିଁ ଚାହତେ ? କୋନ୍ ତୁମାରେ ବଢ଼େବାବୁ ? ହୋନେସେ ହୋଇଭି, ଜନ୍‌ସେ ଯାକେ କହନା, ଜନ୍‌କେ ଜୀବନ୍‌କ ତମରସେ ଇସ୍ ଔରତ୍‌କ ଜୀବନ୍‌କ କମତ୍ କମ୍ ନେହିଁ ହେ ! (ହେମନ୍ତର ପ୍ରବେଶ) ଫୋନ୍ କଲ ?

ହେମନ୍ତ—ଅଜ୍ଞ ! Doctor Ghose ବାହାରକୁ ଯାଇଛନ୍ତି ଘୋଡ଼ାଏ callରେ—ସେଠୁ ଫେରିଲେ ଏଠିକି ଆସିବେ । ତାଙ୍କ Compounder ଫୋନ୍ ଧରିଥିଲେ—

ଜହର—ବେଶ୍ କରିଛ । ତୁମେ ମଟର ନମ୍ବର ପ୍ରଭୃତି ଲେଖିରଖ । ମୁଁ ଏହାଁର license cancel କରିବାର ବନ୍ଦୋବସ୍ତ କରିବି । (ଡ୍ରାଇଭର ପ୍ରତି) ହାଁ, ତୁମ୍ହାରେ ବଢ଼େ ବାବୁକା ନାମ୍ କ୍ୟା ହେ ?

ଡ୍ରାଇଭର—ରାଏସାହେବ ଅମଲ୍ ଚୌଧୁରୀ—

ଜହର—ଓହୋ, ଇସ୍‌ଲିଏ ତୁମ୍‌ନେ ଇତନା ତେଜ୍‌ସେ ମୋଟର୍ ଚଲାରହେଥେ ! କ୍ୟୁଁୟକି ତୁମେ ସମଝ୍ ହେ, accident କର୍‌କେ ଜେଲ୍ ଯାନେସେ ଓ ରୁପିଓଁକେ ଜୋର୍‌ସେ ତୁମ୍ହେ ଛୁଡ଼ା ଲାଏଙ୍ଗେ ।

ଡ୍ରାଇଭର—ବାବୁଜି, ମେ ବହୁତ ଗରିବ୍ ହୁଁ ।

ଜହର—ଗରିବ୍ ? ଆଗର୍ ଗରିବ୍ ହୋତେ ତୋ ସବ୍ ପିକର୍ driving କର୍‌ତେ ?

ହେମନ୍ତ—ଅଜ୍ଞ, ଥାନାକୁ ଘୋଡ଼ାଏ ଖବର ଦେଇ ଦେଉଛି ।

ଜହର—ଅପେକ୍ଷା କର । (ଡ୍ରାଇଭର ପ୍ରତି) ତୁମ୍ ଜାନତେ ହୋ ଡ୍ରାଇଭର୍, ଇସ୍‌କା ନତିଯା କ୍ୟା ହୋନା ପଡ଼େଗା ? ତୁମ୍ ଗରିବ୍, ଦଶ୍‌ବିଶ୍ ରୁପିୟୋଁକା ନୌକର୍ ହୋ ଲେକିନ୍ ଯବ୍ ସୋଫେପର୍ ବୈଠ୍‌କର୍ driving କର୍‌ତେହୋ, ଉସ୍ ୱକ୍ତ ଅପ୍‌ନେକୋ ଗାଡ଼ି ମାଲିକ୍ ସମଝ୍‌ତେ ହୋ । (ହେଡ଼କନ୍‌ଷ୍ଟେବଲ ପ୍ରତି) ହେଡ଼କନ୍‌ଷ୍ଟେବଲ ! ତୁମେ ଫୋନ୍‌ରେ ଥାନାକୁ ଖବର ଦିଅ । ମୁଁ ସୟତାନ୍‌କୁ ସହଜରେ ଛାଡ଼ିଦେବି ନାହିଁ (ଏତିକିବେଳେ ପ୍ରାଣନାଥକୁ ଟାଣି ଟାଣି ଦେବକୁମାର ପହଞ୍ଚିଲ )

ଦେବ—ଜହରବାବୁ ! here is the devil, ମୂର୍ତ୍ତିମାନ, ଖୁବ୍ ଖସି-ଯିବାର ବନ୍ଦୋବସ୍ତ କରଥିଲ । ହେଲେ ଅଜ ଛାଡ଼ିବ ନାହିଁ ! ଏଇ scoundrel ପ୍ରାଣନାଥ ହଜିଛି ପ୍ରକୃତ ଦୋଷୀ । ଏଇ ସ୍ତ୍ରୀଲୋକଟି ପଛରେ ଗୋଟାଏ ଖରାପ ମତଲବ୍ ନେଇ ଗଲି ଭିତରୁ ଦୌଡ଼ି ଅସୁ ଅସୁ ବଗ୍ଗିର ପଡ଼ିଛି ମଟର ଅଗରେ । ହାୟ ହିନ୍ଦୁସ୍ଥାନ ! ହାୟ, ହାୟ !

ଜହର—ସତେ ନା କଣ ? ତାଙ୍କୁ ପୂଲିସ ଜିମା କରିଦିଅ । କିଛିଦିନ ଜେଲ୍‌ରେ ରହିଲେ ସଜାଡ଼ି ହେଇଯିବ ।

ଦେବ—You Mister ! ତୁମେ ତୁମ ନିର୍ଦ୍ଦୋଷତା ସମ୍ପର୍କରେ ସଫେଇ କିଛି ଦେଇପାରିବ ?

ପ୍ରାଣ—ବାବୁ ! ମୁଁ କିଛି ଜାଣେନା । ସିଧା ମୋର ନୂଅବୋହୂ ।

ଦେବ—ନୂଅବୋହୂ ! Hell ବୁଝିଲ ପ୍ରାଣନାଥ ! ତୁମେ ଜହର ବାବୁଙ୍କୁ ଫାଙ୍କି ଦେଇପାର, ସାର ଭାରତବର୍ଷକୁ ଫାଙ୍କି ଦେଇପାର, ମାତ୍ର ଦେବକୁମାରକୁ ଫାଙ୍କି ଦେଇ-ପାରିବ ନାହିଁ ; ଯେହେତୁ ଜନ ଜନ ବର୍ଷର ଅଭିଜ୍ଞତା

ନେଇ ସେ ଫେରନ୍ତ ଏମିତଜାଗାରୁ ଯୋଉଠି ଖାଲି ଫାଙ୍କିମୟ ଜୀବନ, ହାୟ ! ହାୟ ପ୍ରାଣନାଥ ! ତୁମେ ବଡ଼ ଦୁଃସମୟରେ ଧରା ପଡ଼ଗଲ ।

ପ୍ରୀତ—ସେକଥା ଏତେବଡ଼ ଜଘନ୍ୟ ? ନୂଆବୋହୂ ବୋଲି ପରଚୟ ଦବାକୁ ତାର ଏତେ ଟିକଏ ଲଜ୍ଜା ହଉନାହିଁ ?

ଦେବ—ହବ କାହିଁକି ? ଆପଣମାନଙ୍କ ସ୍ତ୍ରୀଜାତର ମୋହ ତ ତମ୍ ନୁହେଁ Miss Pratima ?

ଜହର—ଦେବକୁମାର ! ତୁମେ ସୀମା ଲଙ୍ଘନ କରୁଚ ( ଡ୍ରାଇଭର ପ୍ରତ ) ଅଚ୍ଛ ଡ୍ରାଇଭର, ତୁମ୍ ଯାଓ, ଅବ୍ ବେଳୁସିଅବସେ ଗାଡ଼ ନା ଚଲନା—

ଡ୍ରାଇଭର— ବାବୁଜି ! ( ସଲାମ ଦେଇ ଗୁଲିଗଲା )

ଜହର—ହେମନ୍ତ, ତୁମେ ଏ ସଇତାନ୍ ପ୍ରାଣନାଥକୁ ଛାଡ଼ଦଅ ନାହିଁ । ମୁଁ ତାକୁ ପୋଲିସ୍‌ରେ ଦେବ ।

ପ୍ରାଣ—ଆଜ୍ଞା, ମୋର ତ କଛି ଦୋଷ ନାହିଁ ।

ହେମନ୍ତ—ଚୁପ୍, ଯାହା କହିବାର ପୋଲିସ୍ ଆଗରେ କହିବ ।

ଜହର—ଆଜିଠୁ ପ୍ରତମା ଦେବ ! ଅନ୍ତତଃ Doctor Ghose ଆସିବା ପର୍ଯ୍ୟନ୍ତ ଏ ଅପରଚତାର ଭାର ଆପଣଙ୍କୁ ନବାକୁ ହବ ।

ପ୍ରୀତ—ଚାଲନ୍ତୁ ( ରାଧାକୁ ନେଇ ସିଡ଼ି ଉପରକୁ ଉଠିଲାବେଳେ ପ୍ରାଣନାଥ ପଳେଇବାର ଚେଷ୍ଟା କରୁଥିଲା କନ୍ତୁ ହେମନ୍ତ ଧରନେଲେ )

ହେମନ୍ତ—ଖସିବାର ଚେଷ୍ଟା କରନାହିଁ । ଆଗେ ଥାନାକୁ ଗୁଲ ।

ଦେବ—ସାବାସ୍ ! That's like a good boy ! Thank you very well as you like.

---



## ୪

### ପ୍ରଥମ ଦୃଶ୍ୟ

(ଜହରର ପ୍ରେସ୍ ସଂଲଗ୍ନ Hall Room—ଦେବକୁମାର ଏକାକୀ ପ୍ରବେଶ କରି ଡାକିଲେ ଖୁବ୍ ଜୋରରେ )

ଦେବ—ଜହରବାବୁ ! ଜହରବାବୁ ! (ଜବାବ ନ ପାଇ ପୁଣି ଥରେ) ହେମନ୍ତବାବୁ ! ହେମନ୍ତବାବୁ ! ଅରେ ବାବୁଆ ! ବାବୁଆ !

ବାବୁଆ—(ପ୍ରବେଶ କରି) କଣ କହୁଚ ବାବୁ ?

ଦେବ—ରାଧାରାଣୀ ! ରାଧାରାଣୀ···

ବାବୁଆ—ସେଇ ଉପରେ ଅଛନ୍ତି ।

ଦେବ—Alright—ମୁଁ ଯାଉଚି । (ସିଡ଼ି ଉପରକୁ ଯିବାକୁ ବାହାରିଲେ )

ବାବୁଆ—ବାବୁ ଉପରକୁ ଯାଆନା । ବାବୁଙ୍କର ମନା ଅଛି । ସେଇ ବହୁଲ ଦରୁ ବାବୁ ନିଜେ ପରା ଉପରକୁ ଯାଉ ନାହାନ୍ତି । ମୁଁ ତାଙ୍କୁ ଡାକି ଦଉଚି । ( ପ୍ରସ୍ଥାନ)

ଦେବ— ରାଧାରାଣୀ ! ରାଧାରାଣୀ—Oh, my good God !

ରାଧା—(ଦୌଡ଼ିଆସି) କଣ ଦେବଭାଇ ?

ଦେବ—ଅନେକ ବାଦ ପ୍ରତିବାଦ ପରେ ତୁମେ ଯେତେବେଳେ ରାଜି ହୋଇଛ ରିହର୍ସେଲ୍‌କୁ ତୁମର ଯିବା ଉଚିତ । ମାନେ ତୁମେ ଯେବେ ବାରମ୍ବାର ରିହର୍ସେଲ୍‌କୁ ନ ଯାଅ, ତା'ହେଲେ ଜହରବାବୁଙ୍କର ସମାଧାନ ନାଟକର ନିର୍ଘାତ ବଦନାମ ହେବ । ଅର୍ଥାତ୍ ସମାଧାନ ନାଟକର ଶେଷ ଦୃଶ୍ୟ ବେଳକୁ Auditorium ରେ କେତୋଟି ଘୁମନ୍ତ ଦର୍ଶକ ବ୍ୟତୀତ ଅନ୍ୟ କେହି ନଥିବେ and the drama will be a sad failure !

ରାଧା—ଦେବ ଭାଇ ! ଅଳ୍ପ ଦିନଟା ସାରା ମୋ ଦେହ ଅଡୌ ଭଲ ନାହିଁ । ସେଇଥିପାଇଁ ରିହର୍ସିଲକୁ ଯାଇ ପାରିଲିନି । ଅମଣିମାନେ ବୋଧହୁଏ ଖୁବ୍ ଚଟିଗଲେ ! ତା ଛଡ଼ା ଶିଘ୍ର ଶିଘ୍ର ଅଭିନୟ କରିପାରୁନି ବୋଲି ମୋର ଭାରି ଦୁଃଖ ଅସୁଣ । ମଫସଲ ଝିଅଟିକୁ କେତେ ଅଉ ଶିଖେଇବେ ? ( ବାରୁଅ ପିଢ଼ିରୁ ଆସି ସେଇଠାରେ ଢଳିଗଲା ) ।

ଦେବ—ଦେଖିତ ଘଟିର ହିନ୍ଦୁସ୍ଥାନର ଦୁର୍ଭାଗ୍ୟ । ଅରେ ହିନ୍ଦୁସ୍ଥାନ କଥା ନ ହୁଏ ବାଦ୍ ଦିଅ—ଆମ ଓଡ଼ିଶାର ନିଶ୍ଚୟ ଦୁର୍ଭାଗ୍ୟ ବୋଲିବାକୁ ହବ । ବିଧବା ସଧବା ବିବାହିତା ଅବିବାହିତା, ହରେକ ପ୍ରକାର ଝିଅ, ମାଇକିନିଆ, ନାବାଳିକା, ସାବାଳିକା ଦେଶରେ ଭରପୂର ଅଥଚ ଗୋଟାଏ ଭଲ actress ହେବା ଛଡ଼ା ହବ ଏମିତ ଜଣେ ହେଲେ ନାହିଁ, ହାୟ୍ ହାୟ୍...

ରାଧା—କଣ କହୁଚନ୍ତି ଦେବଭାଇ, ମୁଁ କିଛି ବୁଝିପାରିଲି ନାହିଁ ।

ଦେବ—(ଦୁଃଖରେ ମର୍ମାହତ ହୋଇ) କଣ୍ଟା ମଫସଲିଟା, ମୋ କଥାର ଗୋଟାଏ ବର୍ଣ୍ଣ ବୁଝିବା ବୁଦ୍ଧି ନାହିଁ । ତୁମମାନଙ୍କର ଯେ ଗତି ହେଇର, କାନନବାଲାର ବି ନଥିଲା । ଶୁଣ ରାଧାରାଣୀ ! ଏ ମଡର୍ଣ୍ଣ ଯୁଗରେ ସେସବୁ ମଫସଲ ଗୁଲ୍ ଚଳିବ ନାହିଁ । ଭାବରେ, ଭାଷାରେ, ଇଙ୍ଗିତରେ, ବେଶଭୂଷା ପରିପାଟୀରେ ଗୋଟାଏ Art, ଗୋଟାଏ culture ମାନେ ଟେକ୍ନିକ୍ସ୍ ଥିବା ଗୁଇ । (ପ୍ରବେଶ କଲା ହେମନ୍ତ)

ହେମନ୍ତ—କଣ କି ସାହେବ ? କୋଉ artର cultoure ହଜଉ ଶୁଣେ ?

ରାଧା—ହେମନ୍ତ ବାବୁ ! ମୁଁ ବରାବର rehearsalକୁ ଯାଇ ପାରୁନି ବୋଲି ଦେବଭାଇ ମୋ ଉପରେ ରାଗିଚନ୍ତି ।

ହେମନ୍ତ—ସତେ ନା କଣ ? ( ହସିଲେ )

ଦେବ—(ଗମ୍ଭୀର ଭାବେ) Yes Mister. ସୁନ୍ଦର ରୂପ, ଭଲ୍ ବୁଲ୍ କଣ୍ଠ ଥାଇଁ ଥାଇଁ ସେମାନେ କାହିଁକି ଇମିତ ମାନେ ଇମିତ ବେଶରେ ଅଖି ସାମନାରେ ଛୁଡ଼ା ହୁଅନ୍ତି ଅସି ? Filmରେ join କଲେ ପାଉଣ୍ଡ ପରେ ପାଉଣ୍ଡ ତାଙ୍କ ଦେହର ଓଜନ ବଢ଼ିଯାନ୍ତା । ଦେବୀକାରାଣୀ, ଖୁରସିଦ୍ ପରି ସେମାନେ ବିରୂପ ଜଗତରେ ବିଶିଷ୍ଟ ସ୍ଥାନ ଦାବୀ କରନ୍ତେ । ମାତ୍ର ହେମନ୍ତ ବାବୁ ! ହାୟ, ହାୟ, ଏସବୁ କେବଳ ପ୍ରେତାତ୍ମାର ସ୍ୱପ୍ନ !

ହେମନ୍ତ—ତା' ଠିକ୍ ଦେବକୁମାର ! ହେଲେ ଏସବୁ ଫିଅ ଓ Studioର ଫିଅମାନଙ୍କ ଭିତରେ ଅନେକ ତଫାତ୍ । ଏମାନେ ମଫସଲ ବା ସହରୀ, ଶିକ୍ଷିତା ବା ଅଶିକ୍ଷିତା ହୁଅନ୍ତୁ, ବନ୍ଦନାମର ଛାପ୍ରା ଏମାନଙ୍କୁ ସ୍ପର୍ଶ କରିପାରେନି ।

ଦେବ—ଅଳ୍ପ ଉପରକୁ ଉଠିବାର ସ୍ପୃହା ମଧ୍ୟ ଏମାନଙ୍କର ନାହିଁ । ଲୁଗାପଟା, କଥାବାର୍ତ୍ତା, ଗୃହଚଳନ ସବୁଥିରେ ଗୋଟାଏ ମଫସଲ ଢଙ୍ଗ, କୁଶିକ୍ଷାର ଛାଓ୍ୱା ମିଶି ରହିଛି । Thank God very well as He likes ! ଓଡ଼ିଶା ଭିତରୁ ମୁହଁ ଖୋଲି ଟିକେ ଦେଖନ୍ତେନି କ୍ଷଣ ପାରନ୍ତେନି ଏମାନଙ୍କର ଭବିଷ୍ୟତରେ ଫୁଲ ବରଷନ୍ତା—ଯିବା ଆସିବା ବାଟରେ ପଦ୍ମ ଫୁଟନ୍ତା—Powder, Snow, Lipstickରେ rosy cheek ନେଇ ଏମାନେ ଭାରତ ଭୂଖଣ୍ଡରେ ଦାବୀ କରନ୍ତେ ଫିଲ୍ମଷ୍ଟାର୍ ପାଇଁ · ( ହେମନ୍ତ ପ୍ରସ୍ଥାନ କଲା ଏହା ପୂର୍ବରୁ ଜହର ଝରକାବାଟେ ପ୍ରବେଶକରି ଶୁଣୁଥିଲେ ) ମାନ ହାୟ ହାୟ··· ରାଧାରାଣୀ ! ଏସବୁ ପ୍ରେତାତ୍ମାର ସ୍ୱପ୍ନ ।

ରାଧା—ଦେବଦ୍ୱାର ! ଆପଣ ଏବେ ବାଜେକଥା ଛାଡ଼ିକି ଗପନ୍ତୁ କହନ୍ତୁ ତ ? କହୁଛି, ମୋର ଦେହ ଭଲ ନାହିଁ ବୋଲି ଆଜି ଯାଇପାରିବିନି । ଆପଣ ଯଦି ଏମିତି ଗାଲି ଦେବେ ମୁଁ ଜହରବାବୁଙ୍କୁ କହି ମୋର part ଲେଖା ଖାତା ଫେରେଇ ଦେବି ।

ଦେବ—ତାର ମାନେ ?

ଜହର—( ଅଗକୁ ଆସି ଉତ୍ତାପ୍ରବରେ ) ତାର ମାନେ ତୁମେ ଯେବେ ଅନ୍ୟ କୌଣସିଦିନ କୌଣସି ସ୍ତ୍ରୀଲୋକ ପ୍ରତି ଏପରି ଅସଦ୍‌ବ୍ୟବହାର କର ମୁଁ ତୁମକୁ ବିଦାୟ ଦବାକୁ ବାଧ୍ୟହେବି । ନାରୀଜାତି ପ୍ରତି ଏତେଟା ଶ୍ରଦ୍ଧା, ସହାନୁଭୂତି ବା ଅନୁରାଗ ବିଶେଷ ଭଲ ଲକ୍ଷଣ ନୁହେଁ । ରାଧାର ଯଦି ଇଚ୍ଛା ହୁଏ ସେ part ଖାତା ଫେରାଇ ଦେଇପାରେ । ସେଥିରେ

ତୁମର ଆପତ୍ତି କରିବାର କୌଣସି କାରଣ ନାହିଁ ବା ଦୁଃଖ କରିବାର କିଛି ନାହିଁ । ଦେଶ-ସେବକ ହିସାବରେ ସେ ନାଟକରେ ସାହାଯ୍ୟ କରିବାକୁ ରାଜି ହୋଇଥିଲ, ନୋ ପାଇଡର ମାରି ତୁମ ସାଙ୍ଗରେ Bull dance କରିବାକୁ ଚୁକ୍ତିନାମା ଲେଖିଦେଇନ । ମନେରଖ, ସେ ବିଧବା । କୌଣସିଦିନ ଭୁଲ୍‌ରେ ଯେମିତି ତାର ନାରୀତ୍ୱର ଅବମାନନା ନ ହୁଏ ! ଦେବକୁମାର ! ଶେଷ ଥର ପାଇଁ ମୁଁ ତୁମକୁ ସତର୍କ କରିଦଉଚି—ସାବଧାନ !

ଦେବ—ଜହରବାବୁ ! ···ମୁଁ କିନ୍ତୁ···

ଜହର—ହଁ, ତୁମେ ବର୍ତ୍ତମାନ ଆସିପାର । ରାତି ଅନେକ ହୋଇଗଲା । ( ଦେବକୁମାରର ପ୍ରସ୍ଥାନ ) ରାଧା !

ରାଧା—ଆଜ୍ଞା !

ଜହର—ତୋର ଘୋଟସାକୁ ଫେରିଯା । ତୋର ଦେହ ଭଲନାହିଁ । ବାହାରର ଥଣ୍ଡା ଯେମିତି ନ ଲାଗେ । ( ରାଧା ଧୀରେ ଧୀରେ ଉପରକୁ ଉଠି ଯାଉଥିଲା ) ରାଧା !

ରାଧା—କଣ କହୁଚେ ? ( ଫେରିଆସି ପଚାରିଲା )

ଜହର—( ହାତରେ କାଗଜ ଧରିଥିଲେ, ରାଧାକୁ ଦେଇ ) ନେ, ସମୟ ପାଇଲେ ପଢ଼ି ଦେଖିବୁ, ରାଧା । ଆଜିକାର ଖବର କାଗଜରେ ତୋ ସାଙ୍ଗରେ ମୋର ଆଳାପ ପରିଚୟ ନେଇ ଭାରି ସୁନ୍ଦର ସୁନ୍ଦର ଗଳ୍ପସବୁ ଛପା ହୋଇଚି ।

ରାଧା—କଣ ଜହରବାବୁ ?

ଜହର—ଦ୍ୱିରୁକ୍ତି କରନା—ନେଇଯା, ପଢ଼ିଲେ ଜାଣିପାରିବୁ । ( ରାଧା ନୀରବରେ ସିଡ଼ି ଉପରକୁ ଉଠିଗଲା ) ।

ଜହର—(କିଛି ସମୟ ପଦଚାରଣ କରି ଡାକିଲେ ) ହେମନ୍ତ !

ହେମନ୍ତ—( ପ୍ରବେଶି ) ଆଜ୍ଞା !

ଜହର—ଆଜିକାର ସମ୍ବାଦ କଣ ଜାଣ ?

ହେମନ୍ତ—ଜାଣେ ଆଜ୍ଞା ! ଖବର କାଗଜରେ ଆପଣଙ୍କର ନିନ୍ଦାବାଦ ପ୍ରଚାରହେଉଛି, ଆପଣଙ୍କର କୁତ୍ସା ରଟନା କରିବା ପାଇଁ Paper ର ଆକାର ବି ବଢ଼ିଯାଇଛି ।

ଜହର—Manager ହିସାବରେ ତୁମେ କଣ ଏହାର ଜବାବ ଦେବାକୁ ଚାହଁ ?

ହେମନ୍ତ—ଆଜ୍ଞା ନା ! ପ୍ରତିବାଦର ମୂଲ୍ୟ କିଛି ନାହିଁ । ଆପଣ ରାଧାଙ୍କୁ ବିଦାୟ ଦିଅନ୍ତୁ । ଏତେଦିନ ଆଶ୍ରୟ ଦେବା ଫଳରେ ଆଜି ଦେଶବ୍ୟାପୀ ଯେଉଁ ବିଭ୍ରାଟ ଘଟିଛି, ଆପଣଙ୍କ ହାତରେ ତାର ମୀମାଂସା କରିବାକୁ ଯଥେଷ୍ଟ ଉପାୟ ଅଛି ।

ଜହର—ତୁମେ ନିତାନ୍ତ ଦୁର୍ବଳ ! ତୁମେ କଣ ମନେକରୁଛ ଆଶ୍ରୟହୀନା ରାଧାକୁ ଅବାଟରେ ଠେଲିଦେଇ ମୁଁ ଗୌରବ ଲାଭ କରିବି ? କଅଁଳବୟସର ଗୁରୁଭାର ନେଇ ରାଧା ଆଜି ଯଦି ବାହାରକୁ ଗୋଡ଼ କାଢ଼ିବ, କାଲି ହୁଏତ ତାର ଜୀବନର ଗୋଟାଏ ଅଲଗା ଅଧ୍ୟାୟ ଆରମ୍ଭ ହେବ । ପେଷାଦାର ପ୍ରେମିକ ଓ ତଥାକଥିତ ଯୌବନର ଖରିଦଦାର ଦଳ ତାକୁ କାଠର ଗୃହପାଖରେ ଘେରିଯିବେ । ଶେଷରେ ନିରାଶ୍ରୟା ଯୁବତୀଟି ହୁଏତ ଖସଡ଼ାରେ ଗୋଡ଼ ଖସେଇ ତାର ବଞ୍ଚିବାର ନୀଡ଼ ରଚନା କରିବ । ଅଦୂରର ସେହି ନାମଯାଦା ବସ୍ତିରେ ଯୋଉଠି ପ୍ରତିଦିନ ସନ୍ଧ୍ୟାବେଳେ ବେହେଲା, ବଂଶୀର ତାଳେ ତାଳେ ଘୁଙ୍ଗୁର ନାଚିଯାଏ, ମଦର ନିଶାରେ ଯୋଉଠି ଅଗଣିତ ପ୍ରାଣ ପତଙ୍ଗ ପଡ଼ି ଭଲ ପାଇବାର ପାପ ନିଆଁରେ ନିଜକୁ ଆହୁତି ଦିଅନ୍ତି—ତୁମେ

କଣ ମନେକର ହେମନ୍ତ, ସଧାକୁ ମୁଁ ଗୋଟାଏ ନାଟବାଲୀ ବେଶ୍ୟାରେ ପରିଣତ କରି ଶାନ୍ତି ପାଇବି ?

ହେମନ୍ତ—କିନ୍ତୁ ଆଜି, ଆପଣଙ୍କର ଅପମାନ—

ଜହର—ଅପମାନ ! ମଣିଷ ଜୀବନରେ ମାନ ଅପମାନ, ନିନ୍ଦା ପ୍ରଶଂସା କିଛି ନୂଆକଥା ନୁହେଁ । ସମସ୍ତ ସମୟରେ ଭଲ ରାସ୍ତାରେ ଯାଉଁ ଯାଉଁ ମଧ୍ୟ ଗୋଡ଼ରେ କଣ୍ଟା ଫୁଟେ । ଥକିପଡ଼ିଲେ ଚଳିବ ନାହିଁ ହେମନ୍ତ ! ଚାଲିବା ଯାହାର ପ୍ରକୃତି ସେ ନିଶ୍ଚୟ ଚାଲିବ । ସାରାଅଙ୍ଗରେ କ୍ଷତଚିହ୍ନ ବହି ମଧ୍ୟ ସେ ଆଗେଇ ଯିବ । ମୁଁ ଜାଣେ, ମୋ ଜୀବନରେ ଯୋଉ ନୂଆ ନାଟକ ଆରମ୍ଭ ହେଇଚି, ସେ ନାଟକର ଅଭିନେତା ମୁଁ ଏକା । ସାଙ୍ଗସାଥୀ ମୋର କେହି ରହିବେନି । ଚିରଦିନ ନିଃସଙ୍ଗ ଯାହାର ଜୀବନ, ତାର ସାଥୀ ବା ଦରକାର କଣ ?

ହେମ—କିନ୍ତୁ ସାଥୀ ଭାବରେ ଆପଣଙ୍କୁ ଅନେକ ଚାହାନ୍ତି । କର୍ମୀ ହିସାବରେ ଦେଶ ଅଭିନନ୍ଦନ କରିବାକୁ ଚାହେ ଆପଣଙ୍କର ଦେବୋପମ ପ୍ରତିଭାକୁ, ବିରାଟ ବ୍ୟକ୍ତିତ୍ୱକୁ । ତା ଛଡ଼ା ଆପଣଙ୍କର 'ସମାଧାନ' ନାଟକ ଭାଷା-ସାହିତ୍ୟରେ ସର୍ବଶ୍ରେଷ୍ଠ ଦାନ ।

ଜହର—ଅଭିନନ୍ଦନ ! କଥାଟା ଏକାବେଳକେ ନୂଆ ! ଜୀବନରେ ପ୍ରଥମେ ଶୁଣୁଚି । କୁଲିଜାତିର ଗୋଟାଏ ଅପଦାର୍ଥ—ପ୍ରେତାତ୍ମାକୁ ଦେଶ ଅଭିନନ୍ଦନ କରିବାକୁ ଚାହେ ! (ଜୋରରେ ହସିଉଠିଲେ) ସମ୍ବାଦପତ୍ରରେ ଯାହାର ହୀନ, ଜଘନ୍ୟ ମନୋବୃତ୍ତି ନେଇ ଦୀର୍ଘ ସମାଲୋଚନା ପ୍ରକାଶ ପାଉଚି, ସେଇ କଣ ତାର ପ୍ରତିଭାର ଯଥେଷ୍ଟ ପରିଚୟ,

ନୁହେଁ ? ଶେଷରେ ତୁମେ ମଧ୍ୟ ଥଟ୍ଟା କରିବାକୁ ଆରମ୍ଭ କଲ ହେମନ୍ତ ?

ହେମନ୍ତ—ଦେବତାର ଅପମାନ କରିବାକୁ ମୁଁ ଶିଖିନାହିଁ ।

ଜହର—ଦେବତା ? ହାଃ-ହାଃ-ହାଃ-ହାଃ-ଯୋଉ ଦେଶରେ ମୂଲିଆର ଧନରେ ମହାଜନ ସାଉକାରଙ୍କର ମାଲିକ ; ଗରିବର ରକ୍ତ ଶୋଷି ଯୋଉ ଦେଶରେ ଧର୍ମ ତାର କୋଠା ତୋଳେ, ଚଷାର ପ୍ରାଣନେଇ ରଜାର ଯୋଉ ଦେଶରେ ରାଜତ୍ୱ, ସେଇ ପିଶାଚର ଦେଶରେ ତୁମେ ଦେବତା ଦେଖିଲ କେଉଁଠି ? ହେମନ୍ତ ! ଏ କେବଳ ତୁମର ଅଗାଧ ମୂର୍ଖତାର ପରିଚୟ !

ହେମନ୍ତ—କିନ୍ତୁ ଆଜି—

ଜହର—କଳଙ୍କ ଧାସରେ ମୁଁ ନଇଁ ପଡ଼ିନାହିଁ ହେମନ୍ତ ! ଆଜି ମଣିଷ ଜାତି ଭିତରେ ଯୋଉ ସଇତାନ୍ ଜାଗି ଉଠିଚି, ତାକୁ ଜୟ କରିବାକୁ ମୋର କେତେ ଜନ୍ମର ସାଧନା ଦରକାର ସେଇତକ ମୁଁ ଭାବି ପାରୁନାହିଁ । ଶ୍ରୀମତୀ ଛାୟାଦେବୀଙ୍କ ସହିତ ମୋର ଅସଦ୍‌ବ୍ୟବହାର ଓ ବିଧବା ରାଧା ସହିତ ମୋର ପାପ ପ୍ରଣୟର ଜଘନ୍ୟ ପ୍ରଚାର ଆଜି ଦେଶ ତମାମ ରାଷ୍ଟ୍ର ହେଇଚି । ଏଇ ଛୋଟ ପ୍ରେସ୍‌ର ନିଭୃତ ବେଷ୍ଟନୀ ଭିତରେ ଥାଇ ମୁଁ ଯେଉଁ ଆଦର୍ଶର ମୂର୍ତ୍ତି ସ୍ଥାପନ କରିବାକୁ ପରିକଳ୍ପନା କରୁଥିଲି, ସେ ଆଜି ମୋ ନିକଟରେ ଏକ ବିରାଟ ଉପହାସ । ମତେ ତୁମେ ଛାଡ଼ିଯାଅ ହେମନ୍ତ । ପାପ, କଳଙ୍କ, ବଦନାମ ଭିତରେ ମତେ ଆଉ ରାଧାକୁ ଛାଡ଼ି ତୁମେମାନେ ଚାଲିଯାଅ । ମୋର ଦୁଃଖ କରିବାକୁ

କିଛି ରହିବ ନାହିଁ । ହଁ ହେମନ୍ତ ! ତୁମକୁ ମୁଁ ହସି ହସି ବିଦାୟ ଦେବି । ( ରାଧା ଉପରୁ ଓହ୍ଲାଇ ଆସିଲା )

ରାଧା—(ପାଗଳୀପରି) ମତେ ବିଦାୟ ଦଅନ୍ତୁ ଜହରବାବୁ ! ମୋ ବାଟରେ ମୁଁ ଚାଲିଯିବି । ତୁମଠାରେ ଗଳଗ୍ରହ ହୋଇ ଆଉ ବସି କିଛି ଲାଭ ନାହିଁ ବାଧା ଆସିବନି । (ଜହରର ପାଦତଳେ ପ୍ରଣାମ କଲା ) ଆପଣଙ୍କ ଭଳି ଦେବତାଙ୍କ ଦେହରେ କଳଙ୍କ ବୋଳି (ଦୁଃଖରେ ହେମନ୍ତର ପ୍ରସ୍ଥାନ) ନା, ନା, ମୁଁ ପାରିବି ନାହିଁ ।

ଜହର—ଚୁପ୍ ହେଇ ଉପରକୁ ଚାଲିଯା କହୁଚି । ଦେହରେ ତୋର ଥଣ୍ଡା ଲାଗିବ ।

ରାଧା—ଜହରବାବୁ—

ଜହର—ଶୀଘ୍ର ଚାଲିଯା । ମୁଁ କିଛି ଶୁଣିବି ନାହିଁ । ତୁମମାନଙ୍କର ବାଜେ କଥାକୁନେଇ ମୁଁ ପାଗଳ ହବାକୁ ଚାହେଁନା । ଦେଶ-ପାଇଁ, ଜାତିପାଇଁ ମତେ ବଞ୍ଚିବାକୁ ହବ । ବଦନାମ କୁତ୍ସା ଭିତରେ ବୁଡ଼ିରହି ମଧ୍ୟ ମତେ ବଞ୍ଚି ରହିବାକୁ ହବ । ଯାହା କହୁଛି ସେଇଆ କର । ଯା, ଏଠୁ ଯା । ସ୍ନେହ ପିଇବାର ତୋର ମୁହଁରୁ ମୁଁ ଆଉ ଶୁଣିବାକୁ ଚାହେଁନା—ଯା ଯା—

(ରାଧା ଧୀରେ ଧୀରେ ଚାଲିଗଲା । ଜହର ଚାହିଁ ରହିଥିଲେ, ଛାୟା ଓ ପ୍ରୀତି ପ୍ରବେଶ କଲେ ) ।

ପ୍ରୀତି—ନମସ୍କାର ଜହରବାବୁ ! ( ଛାୟା ନୀରବରେ କେବଳ ନମସ୍କାର କଲା )

ଜହର—ଓ ! ଆପଣମାନଙ୍କୁ ମଧ୍ୟ ମୋର କଳଙ୍କର ଇତିହାସ ତା'ହେଲେ ଅଜଣା ନାହିଁ ? ପଢ଼ି ଦେଖିଲେ ତ ? କେମିତି ? ଭାରି ଚମତ୍କାର, ନୁହେଁ ?

ପ୍ରୀତି—ନା ଆମେ ଦୁହେଁ ସିନେମାକୁ ଯାଉଁ ଯାଉଁ ବାଟରୁ ଫେରି-ଆସିଲୁ ।

ଜହର—ବୁଝିଲ, ଗୋଟାଏ ବାଦ୍ୟପର ଇଙ୍ଗିତନେଇ ଆପଣମାନେ ଆସିଚନ୍ତି ଉପଭୋଗ କରିବାକୁ । ଖବରକାଗଜର ଅଭିନବ ରହସ୍ୟମୟ କାହାଣୀ ଆପଣମାନଙ୍କୁ ସାନ୍ଧ୍ୟ-ଉପଭୋଗର ଖୋରାକ ଦେଇଛି । ମୋର ଅନୁମାନ କଣ ସତ ନୁହେଁ, ଶ୍ରୀମତୀ ପ୍ରତିମା ଦେବୀ ?

ଛାୟା—ଜହର ବାବୁ ! (ଢୋଲାଙ୍କ ପିଠି ଉପରେ ଛିଡ଼ାହୋଇ ସୁଧା ସବୁ ଶୁଣୁଥିଲା ।)

ଜହର—ଠିକ୍ ଛାୟା ! ଦେଶର ପ୍ରତ୍ୟେକଙ୍କର କଥା ଶୁଣିବାକୁ ବର୍ତ୍ତମାନ ମତେ ଯଥେଷ୍ଟ ସମୟ ମିଳୁଛି । ବେଶ ନିଶ୍ଚିନ୍ତରେ ମୁଁ ଏଥର କାନ ଦୁଇଟିକୁ ସବୁବେଳେ ସଜାଗ ରଖିପାରୁଛି ।

ଛାୟା—ଆପଣ ବୋଧହୁଏ ଜାଣିଲେ ଆଶ୍ଚର୍ଯ୍ୟ ହେବେ, ଶ୍ରୀଯୁକ୍ତ ଅମଳ ଚୌଧୁରୀ ଓ ସ୍ୱାମୀଙ୍କର ଚକ୍ରାନ୍ତରେ ଆଜି ଆପଣଙ୍କର ଦେଶସାରା କୁତ୍ସା ରଟନା ହେଉଛି । ଅନେକଦିନ ଧରି ସେମାନେ ଯୋଗ୍ୟ ସୁଯୋଗ ଅପେକ୍ଷାରେ ଥିଲେ, ସେ ଆଜି ଉପସ୍ଥିତ ହୋଇଛି । ସୁଧାପାଇଁ ଆପଣଙ୍କର ଦୁର୍ନାମ ।

ଜହର—ସୁଧାକୁ ଛାଡ଼ିଦେଲେ ତୁମେ ନିଶ୍ଚୟ ଖୁସି ହବ ତା' ମୁଁ ଜାଣେ । କାରଣ ଭଲପାଇବାର ନିଶା ତୁମକୁ ଏପର୍ଯ୍ୟନ୍ତ ଛାଡ଼ିନି । ତୁମେ କଣ ପୁଣି ଥରେ ସେଇ ପୁରୁଣା ଖେଳ ଖେଳିବାକୁ ଆସିଚ ଛାୟା ?

ଛାୟା—ଛାୟା ସ୍ତ୍ରୀ—ଅଜ ସେଇଥିପାଇଁ ତାର ଜୀବନର ଦାମ୍ ଖୁବ୍ କମ୍, ନା ?

ଜହର—ସେ ଦରଦାମ୍‌ର କଥା ମୋ ଆଗରେ କାହିଁକି ? ତାର ଜବାବ ଦେବେ ତୁମର ଭାଇ ସୁଧାଂଶୁବାବୁ ।

ପ୍ରୀତି—ସୁଧାଂଶୁବାବୁ ଆପଣଙ୍କର କୁଏନ୍ତ ସର୍ବନାଶ କରିବାକୁ ଯାଇଥିଲେ, ତା’ ବୋଲି ଛନ୍ଦା ଉପରେ ତ ପ୍ରତିଶୋଧ ନେଲେ ଚଳିବ ନାହିଁ, ଜହରବାବୁ ? ସେ ଏଠିକି କଳି କରିବାକୁ ଆସିନାହିଁ ।

ଜହର—ତା’ହେଲେ ଶୁଭାଗମନର ଉଦ୍ଦେଶ୍ୟ ?

ଛନ୍ଦା—ଆପଣଙ୍କର ନିନ୍ଦାବାଦ ଶୁଣି ଚୁପ୍‌ହୋଇ ରହିପାରିଲି ନାହିଁ— ଏବେବି ମିଥ୍ୟାପ୍ରଚାର ମୂଳରେ ଭାଇଙ୍କର ଯେ ହାତ ଅଛି, ଏଇତକ ଆପଣଙ୍କୁ ଜଣେଇବାକୁ ଆସିଛି ।

ଜହର—ବେଶ୍ କରିଛ; ଧନ୍ୟବାଦ ! ମୁଁ ତୁମ ନିକଟରେ ଋଣୀ ।

ଛନ୍ଦା—କିନ୍ତୁ କେବଳ ଏତିକି କଣ ମୋର ପ୍ରାପ୍ୟ ?

ଜହର—ସାଂଘାତିକ ଝିଅ ତୁମେ ଛନ୍ଦା ! ତୁମଙ୍କୁ ଏଡ଼ିବାର ସମସ୍ତ ସାହସ ମୁଁ ହରେଇଛି ।

ପ୍ରୀତି—ଜହରବାବୁ ! ଶେଷ ଥରପାଇଁ ମୁଁ ଅନୁରୋଧ କରୁଛି ଆପଣ ଛନ୍ଦାକୁ ଗ୍ରହଣ କରନ୍ତୁ ।

ଜହର—ପ୍ରତିମା ଦେବୀ ! କୋଉ ହିସାବରେ, କୋଉ ଅଧିକାରରେ ଆପଣମାନେ ଏ ନିର୍ଲଜ୍ଜ ପ୍ରସ୍ତାବ ନେଇ ବାରମ୍ବାର ଆସୁଛନ୍ତି— ମୋ ନିକଟରେ ଏ ପ୍ରଶ୍ନ ଏକ ବିରାଟ ପ୍ରହେଳିକା ହୋଇ ଉଠିଛି । କହିଛି ତ, ମୋର ଲକ୍ଷ୍ୟ ସବୁବେଳେ ସମାନ । ଛନ୍ଦା, ତୁମେ ଜାଣ ନାହିଁ, ମୋ ସ୍ପର୍ଶରେ ଅଛି ଜହର, ବିଷ ! ମୋଠୁଁ ଦୂରରେ ଦୂରରେ ରହିବା ଭଲ ।

ଛନ୍ଦା—ପ୍ରୀତି ! ମତେ ଏଠିକି ଜୋରକରି ଟାଣି ଆଣିବା ତୋର ଭୟାନକ ଅନ୍ୟାୟ ହୋଇଛି । ଥିଲା ଥାଆନ୍ତୁ ଜହରବାବୁ, ଆମେ ଆସୁଚୁ । (ପ୍ରସ୍ଥାନୋଦ୍ୟତ)

ଜହର—ଶୁଣ ଛାୟା, ମୋ ବିରୁଦ୍ଧରେ ଯେଉଁ ଦୁର୍ନାମ ଆଜି ଦେଶ-ବ୍ୟାପୀ ସୃଷ୍ଟି ହୋଇଛି ସେଥିପାଇଁ ମୁଁ ଆଦୌ ଭ୍ରୂକ୍ଷେପ କରିନାହିଁ । ଗୋଟିଏ ନିରାଶ୍ରୟା ବିଧବା ଯୁବତୀକୁ ଦୁନିଆର ପାପ-ପଥରେ ଠେଲିଦେଇ ଗୌରବ ଅର୍ଜ୍ଜନ କରିବାକୁ ମୁଁ ଚାହେଁନା । ସେଥିପାଇଁ ଯେବେ ମୋର ମନୁଷ୍ୟତା ଟିକକ ବଳିଦବାକୁ ପଡ଼େ, ମୁଁ ଦୁଃଖିତ ହେବିନାହିଁ । ସୁଧାଂଶୁ ବାବୁଙ୍କୁ ଜଣେଇ ଦବ, ତାଙ୍କର ମିଥ୍ୟାପ୍ରଚାର ନିମନ୍ତେ ମୁଁ ବିଶେଷ ଦୁଃଖିତ ନୁହେଁ । ପୃଥିବୀର ସମଗ୍ର ମନୁଷ୍ୟଜାତିକୁ ମୋ ବିରୁଦ୍ଧରେ ଛିଡ଼ା କରେଇଲେ ମଧ୍ୟ ସେଥିପାଇଁ ମୁଁ ପ୍ରସ୍ତୁତ ରହିଥିବି । ସ୍ତ୍ରୀଜାତି ମାତୃଜାତି, କ୍ରୀଡ଼ା ନୁହେଁ । ସେଥିପାଇଁ ରାଧାର ଜୀବନ ରକ୍ଷା କରିବା ମୋର ପ୍ରଥମ କର୍ତ୍ତବ୍ୟ ।

ଛାୟା—କିନ୍ତୁ ରାଧାକୁ ନେଇ ଆପଣଙ୍କର ଯୋଉ ବଦନାମ ହଉଛି—(ଛାୟା ଓ ପ୍ରୀତି ମୁଣ୍ଡ ନୁଆଁଇ ଚାଲି ଯାଉଥିଲେ)

ଜହର—ସେ ବଦନାମ ଭିତରେ ମୋର ସୁନାମ ଅଛି ଛାୟା ! ଆଜି ସେ ପ୍ରଶ୍ନ ଦରକାର ନାହିଁ । ଅନେକ କଟୂକଥା କହି ତୁମ ମନରେ ମୁଁ କଷ୍ଟ ଦେଇଛି । କିନ୍ତୁ ମୁଁ ନାଚାର । ଜଣେ ବିପ୍ଳବୀ ତୁମକୁ ଭଲ ପାଇବାର ପ୍ରତିଦାନ ଦେଇ ପାରିବନି ; ଫେରିଯାଅ ଛାୟା, ତୁମେ ଜହରକୁ ଏକୁଟିଆ ଛାଡ଼ି ତୁମ ବାଟରେ ଚାଲିଯାଅ । ମୁଁ ଆଶୀର୍ବାଦ କରୁଛି, ତୁମର ଜୀବନ ମଙ୍ଗଳମୟ ହଉ । (ଟିକିଏ ରହି) ତେବେ ତୁମ ଚଲା-ବାଟରେ ଯେବେ କୌଣସି ଦିନ କଣ୍ଟା ଫୁଟିବ, ମୋ ପାଖକୁ ଆସିଲେ ମୁଁ ଅଳ୍ପେକର ସନ୍ଧାନ ଦେବି । ସେ ପ୍ରତିଶ୍ରୁତି ମୁଁ

ତୁମକୁ ଦଉଛି । (କହୁଁ କହୁଁ ଜହର ସେମାନଙ୍କୁ ଛାଡ଼ି ଚାଲିଗଲେ, ପଛେ ପଛେ ଛାୟା ଓ ପ୍ରୀତିର ପ୍ରସ୍ଥାନ)

(କିଛିକ୍ଷଣପାଇଁ ରଙ୍ଗମଞ୍ଚ ଅନ୍ଧକାର ରହିଲା । ତା'ପରେ ସେହି ଅନ୍ଧକାର ଭିତରେ ଦେଖାଗଲା ଦୋତାଲା ଉପରୁ ଧୀରେ ଓହ୍ଲାଇ ଆସୁଛି ରାଧା । ସିଡ଼ି ଉପରୁ ଓହ୍ଲାଇ ଆସି ସଦର ଦରଜାର ଛିଟିକିଣି ଖୋଲିଲାବେଳେ ଶବ୍ଦ ହେଲା । ସେହି ଅବାଜରେ ଭିତରୁ ଜହରର ପାଟିଶୁଭିଲା )

ଜହର—କିଏ ! (ରାଧା ଚମକି ପଡ଼ିଲା ; ଭୟରେ ତାର ଶରୀର ହିମ ହୋଇ ଉଠିଲା । ସେ କିଂକର୍ତ୍ତବ୍ୟବିମୂଢ଼ା ହୋଇ ଦରଜାର ପରଦାରେ ନିଜ ଶରୀର ଆବୃତ୍ତ କରି ଅପରାଧୀଟି ପରି ଛିଡ଼ା-ହୋଇ ରହିଲା । ପରେ ପରେ ଘରର ସୁଇଚ୍ ଟିପି ଜହର ଘର ଭିତରେ ପ୍ରବେଶ କଲେ ଓ ରାଧାକୁ ସେଇଭଳି ଅବସ୍ଥାରେ ଦେଖି ତାର ମନୋଭାବ ବୁଝି ପାରିଲେ ) ।

ରାଧା ! ମୁଁ ଜାଣେ ତୁ ଚାଲିଯିବାକୁ ବସିଛୁ । ଚାଲିଯିବା ଯଦି ତୋର ଏକମାତ୍ର ଲକ୍ଷ୍ୟ ତା'ହେଲେ ରାତି ଅଧରେ ଚୋର ପରି ପଳେଇଯିବାର କଣ ଦରକାର ଥିଲା ? ମୋଟର ଦୁର୍ଘଟଣା ପରେ କେତେଦିନ ପାଇଁ ମୋ ଘରେ ତୁ ଆଶ୍ରୟ ନେଇଥିଲୁ । ଭବିଷ୍ୟତରେ ତୋ ଜୀବନରେ ଆଉ ଯେପରି କୌଣସି ପ୍ରକାର ଦୁର୍ଘଟଣା ନ ଘଟେ ସେଥିପାଇଁ ତତେ ମୁଁ ମୋର ଘରେ ସ୍ଥାନ ଦେଇଥିଲି । ମୋର ଆଶା ଥିଲା, ଭରସା ଥିଲା, ତୁ ହୁଏତ ଏଇଠି ରହି ତୋର ସାରା ଜୀବନ କୌଣସି ମହତ୍ ଉଦ୍ଦେଶ୍ୟରେ ଲଗେଇ ପାରିବୁ ; ମାତ୍ର ତା ଯେତେବେଳେ ତୋର ଇଚ୍ଛା ନୁହେଁ—

ରାଧା—ଜହରବାବୁ ! ମୋ ପାଇଁ ସମସ୍ତେ ଆପଣଙ୍କର ନିନ୍ଦା କରୁଛନ୍ତି । ଅଭାଗୀ ରାଧାକୁ ଘରେ ସ୍ଥାନ ଦେଇଛନ୍ତି ବୋଲି ଆପଣଙ୍କର ବନ୍ଧୁମାନେ ଆପଣଙ୍କୁ ଛାଡ଼ି ଗୁଲିଯାଉଛନ୍ତି ।

ଜହର—ତୋର ସୁନ୍ଦର ମୁହଁରେ ମଳେ ଭୁଲେଇବାର ଚେଷ୍ଟା କରନା ରାଧା ! ପୃଥିବୀର କୌଣସି ଶକ୍ତିକୁ ମୁଁ ଖାତିର୍ ରଖେନା ଯଦି ସେ ଶକ୍ତି ଅନ୍ୟାୟକୁ ପ୍ରଶ୍ରୟ ଦେଇ ମନୁଷ୍ୟତାର ଡିଣ୍ଡିମ ବଜାଏ । କୌଣସି ପ୍ରକାର ନିନ୍ଦା, ଗ୍ଳାନି, ଅପବାଦ, ଅଭିଶାପକୁ ମୁଁ ଭ୍ରୂକ୍ଷେପ କରେନା, ଯେବେ ତାର କିଛି ଗୋଟାଏ ମୂଳଭିତ୍ତି ନ ଥାଏ । ଛାଡ଼ ସେସବୁ କଥା । ତତେ ବୁଝାଇ ଲାଭ ନାହିଁ । ତୋର କେବଳ ଏତିକି ଜାଣି-ରଖିଲେ ଯଥେଷ୍ଟ ହବ, ତୁ ଯେବେ ଆଜି ରାତିରେ ଘୋଡ଼ କାଢ଼ି ବାହାରକୁ ଯାଉ କାଲି ଦୁନିଆ ବାଟରେ ତୋର ଜୀବନ ଗୋଟିଏ ବଣିକଖର୍ଦ୍ଦିର ସାମଗ୍ରୀ ହେଇଉଠିବ । ରୂପଯୌବନର ଅନେକ ପୂଜାରୀ ଲାଳାୟିତ ହେବେ ତୋର ଜୀବନକୁ ସର୍ବନାଶର ବାଟରେ ଟାଣି ନବାକୁ ।

ରାଧା— ଜହରବାବୁ, ଜହରବାବୁ ! (ଦୂରରୁ ଭାସି ଆସିଲା ଏକ କରୁଣ ସଂଗୀତର ମୂର୍ଚ୍ଛନା )

ଜହର—ମୁଁ ଜାଣେ ତୋ ଆଗରେ ଏସବୁ କଥା କହିବା ପାପ; ମାତ୍ର ନ କହି ରହି ପାରୁନାହିଁ ରାଧା ! ଆଜି ଏଇ ଦୁର୍ଯୋଗ ଅମାବାସ୍ୟା ରାତି, ଜୀବନ ମରଣର ସମସ୍ୟା ନେଇ ତୁ ଯାଉଛୁ ଗୋଟାଏ ସୀମାହୀନ ଅନନ୍ତ ପଥରେ ! ଯାଉଁ ଯାଉଁ ଘୋଡ଼ ଖସିବା ଅପେକ୍ଷା ବାଟରେ ତୋର ଯଦି ମୃତ୍ୟୁ ହୁଏ ସେଇ ବରଂ ଭଲ; ନଚେତ୍ ଓଡ଼ିଆଘରର କୁଳବଧୂ ଗୋଟାଏ ନାଚବାଲି, ବେଶ୍ୟା ହେଇ—

ରାଧା—ଜହରବାବୁ, ଆପଣ ଏସବୁ କଣ କହୁଚନ୍ତି ?

ଜହର—ମିଛ କହୁନାହିଁ ରାଧା ! ତୋରପରି ଶତ ଶତ ଅଭାଗିନୀ ଅଛି ନିରୁପାୟ ହୋଇ ବସା ବାନ୍ଧିଛନ୍ତି ଅହୂବର ସେଇ ବେଶ୍ୟାପଲ୍ଲୀରେ ଯୋଉଠି ଲକ୍ଷ ଲକ୍ଷ ପେଶାଦାର ପ୍ରେମିକ, ସେମାନଙ୍କର ଯୌବନକୁ ଶ୍ୱାନ ଶୃଗାଳପରି ଠିକ ଠିକ କରି ବାଣ୍ଟି ଉପଭୋଗ କରନ୍ତି । ସେମାନଙ୍କର ନାରୀତ୍ୱ, ସତୀତ୍ୱ, ମହତ୍ୱ ଠିକକ ବଳିପଡ଼େ ପିଶାଚର ନାଗପାଶ ଭିତରେ, ବର୍ବରତାର ରକ୍ତବେଦୀ ଉପରେ ! ଘର ଛାଡ଼, ସମାଜ ଛାଡ଼ି ତୁ ଚାଲି ଆସିଚୁ । ସେଠିକି ଫେରିବାର ଉପାୟ ତୋର ନାହିଁ । ତୋଉଠି ଯାଇ ମୁଣ୍ଡ ଗୁଞ୍ଜିବୁ କହ ତ ?

ରାଧା—ମୁଁ ସବୁ ବୁଝିଚି ଜହରବାବୁ ! କିନ୍ତୁ ଆପଣଙ୍କର କଳଙ୍କ ମୁଁ ସହି ପାରିବି ନାହିଁ ।

ଜହର—ଦ୍ୱିରୁକ୍ତି କରନା ରାଧା ! ତୋର ଯେବେ ଯିବାର ଇଚ୍ଛା, ବାଧା ଦେବିନାହିଁ ମୁଁ; ବରଂ ନିଜ ହାତରେ ଦରଜା ଖୋଲି ଦଉଚି । (ଦରଜା ଖୋଲି) ଯା—

ରାଧା—ଜହର ବାବୁ, ଜହର ବାବୁ !

ଜହର—ତୋର ଆସିବାପାଇଁ ମୋ ଦରଜା ଖୋଲା ଥିଲା । ଆଜି ଯିବାପାଇଁ ମଧ୍ୟ ଦରଜା ଖୋଲା ଅଛି । ଆଜି ମୁଁ ନିଜେ ଖୋଲି ଦଉଚି କିନ୍ତୁ ଯା ପରେ ରାଧାପାଇଁ ଏ ଦରଜା ଚିରଦିନଲାଗି ବନ୍ଦ ରହିବ । ଏଥର ତୁ ଯାଇପାରୁ ।

(ଫେରିପଡ଼ି ନିଜର ଶୋଇଲା ଘରକୁ ଚାଲିଗଲେ । ରାଧାଆଡ଼କୁ ଫେରି ଚାହିଁଲେ ନାହିଁ । ଦୂରରୁ ବୈଷ୍ଣବୀ ଗୀତର ଝଙ୍କାର ସ୍ପଷ୍ଟତର ହୋଇଆସୁଛି । ଝରି ଝରି ହେଇ ରାଧା ଆଖିରୁ ଝରି-ପଡୁଛି ଲୁହ, ଶ୍ରାବଣର ଧାରା ଭଳି । ବାହାରର ଝଡ଼ ତୋଫାନ

ଅନ୍ତକୁ ସେ ଅନ୍ତ ଗୃହେଁ ପାରିବ ନାହିଁ । ଭୟରେ ଅର୍ତ୍ତିନାଦ କରି ଦରଜା ଛିଟିକିଣି ନିଜ ହାତରେ ଦେଇକର ଦ୍ରୁତ-ପଦକ୍ଷେପରେ ସିଢ଼ି ବାହି ଦୋତାଲା ଉପରକୁ ଉଠିଗଲ )

---

## ଦ୍ୱିତୀୟ ଦୃଶ୍ୟ

ରାଜପଥ

( ଗୀତ ଗାଇ ଗାଇ ଜଣେ ଛବିବିକ୍ରେତାର ପ୍ରବେଶ )

ଗଞ୍ଜଣା! ଭରି ଅଜଣା ପଥେ, ପାଦ ଖସାନା ମୋର ।
ସେ ଅପବାଦ ଅଦ୍ଭୁତ ଗୋ—
ରାଈ କିଶୋରୀ । ୦ ।
ହକାରେ ବ୍ରଜ ବଜାରେ, ନିନ୍ଦା ବାଜଣା ବାଜୁଛି ନାଁରେ ;
ହସିଲେ ହସନ୍ତୁ ନଗର, ତାଳିମାର ଗୋ—
ରାଈ କିଶୋରୀ । ୧ ।

ଗୋକୁଳ ବୃନ୍ଦ ପୀରତି ପାଳି,
ସନ୍ଧ ଯା ସବୁ ପାଷାଣୀ, ଲୁହ ଢାଳି ;
ପ୍ରେମ-ଯମୁନା ଉଜାଣି ଜାଣି, ଫେରିବ ଫଗୁଣ ହୋରି ;
ସବୁ ମନ ଅମେଳ ଦେବ ଛୁଟାଇ ତା' ରଙ୍ଗିନ ପିଚକାରି,
ରାଈ କିଶୋରୀ,
ସେ ଅପବାଦ ଅଦ୍ଭୁତ ଗୋ । ୨ ।

---

# ତୃତୀୟ ଦୃଶ୍ୟ

(ସୁଧାଂଶୁର ଘର, ସିନ୍ ଉଠିଲାବେଳକୁ ଦେଖାଗଲା ଗୋଟିଏ Cbair ଉପରେ ବସି ଛାୟା ଖଣ୍ଡିଏ Paper ପଢ଼ୁଛି । ଧୀରେ ଧୀରେ ପ୍ରବେଶ କଲା ପ୍ରୀତି । ଲୁଚି ଲୁଚି ଆସି ହଠାତ୍ ଛାୟା ହାତରୁ ଛଡ଼ାଇ ନେଇ ଦେଖିଲା । )

ପ୍ରୀତି—ଦେଖୁଚି ବଦଭ୍ୟାସଟା ତା'ହେଲେ ତୁ ଛାଡ଼ି ପାରନୁ ?

ଛାୟା—କୋଉ ଅଭ୍ୟାସ କହୁଚ ?

ପ୍ରୀତି—ଏଇ ନିରୋଳାରେ ବସି ବସି ଜହରବାବୁଙ୍କ କଥା ଭାବିବା ।

ଛାୟା—ପ୍ରୀତି ! ଅକାରଣରେ ଜହରବାବୁଙ୍କ କଥା କହି ମୋ ମନରେ କାହିଁକି କଷ୍ଟ ଦଉଚୁ ?

ପ୍ରୀତି—କାରଣ ନ ଥାଇ ମୁଁ କୌଣସି କଥା କହୁନାହିଁ ।

ଛାୟା—ଅର୍ଥାତ୍ ?

ପ୍ରୀତି—ଆଜିକାର ଖବରକାଗଜରେ ଜହରବାବୁଙ୍କ ବିଷୟରେ ଯୋଉ ସମାଲୋଚନା ପ୍ରକାଶ ପାଇଚି, ତୁ ତାକୁ ଖୁବ୍ ମନଦେଇ ପଢ଼ୁଚୁ କିନା, ସେଇଥିପାଇଁ କହୁଲି ତୁ ତୋର ପୁରୁଣା ଅଭ୍ୟାସଟା ଛାଡ଼ି ପାରନୁ ।

ଛାୟା—ତାହାହେଲେ ଜହରବାବୁଙ୍କ ଉପରେ ତୋର ଭାରି ଅଶ୍ରଦ୍ଧା ଆସି ଯାଇଚି, ନା ? ଅନ୍ତତଃ ସେଦିନର ଘଟଣା ପରେ ।

ପ୍ରୀତି—ହିଁ ଯୋଉଠି ଶ୍ରଦ୍ଧାର କୌଣସି ମୂଲ୍ୟ ନାହିଁ, ସେଠି ଅଶ୍ରଦ୍ଧା ଛଡ଼ା କଣ ଆସିବ ?

ଛାୟା—ନା ପ୍ରୀତି, ଜହରବାବୁଙ୍କୁ ତୁ ଭୁଲ ବୁଝିଚୁ । ଏ ସବୁ ମିଛ କଥାଗୁଡ଼ା ପଢ଼ି ପଢ଼ି ଜହରବାବୁଙ୍କ ଉପରେ ତୋର ଯେବେ ସତକୁ ସତ ଘୃଣା ଜନ୍ମିଥାଏ, ତା'ହେଲେ ସେଇଟା ତୋର

ନିତାନ୍ତ ପକ୍ଷପାତୀତା । କାରଣ ମୋ ପ୍ରତି ସେ ଯେତେ ନିଷ୍ଠୁର ହୁଅନ୍ତୁ ନା କାହିଁକି ଦେଶପାଇଁ, ଜାତିପାଇଁ ସେ ଖୁବ ଉଦାର । ତାଙ୍କ ବିରୁଦ୍ଧରେ ଯୋଉ ସମାଲୋଚନା ତାହାଦର ଅନ୍ୟ କେହି ହୋଇଥିଲେ ସେ ଭାଙ୍ଗିପଡ଼ନ୍ତାଣି । ହେଲେ ଜହରବାବୁ, ଏସବୁ ବାଜେ କଥାକୁ କାନ ନ ଦେଇ ତାଙ୍କର ଲକ୍ଷ୍ୟ ଠିକ୍ ରଖିଚନ୍ତି ।

ପ୍ରୀତି—କିନ୍ତୁ ଏତେଦିନ ତାଙ୍କର ଉଦାରତାର ପୂଜାକରି ତୁ କଣ ପାଇଚୁ କହ ତ ?

ଛାୟା—ମୁଁ କିଛି ପାଇନାହିଁ, ବରଂ ଅନେକ କିଛି ହରେଇଚି । କିନ୍ତୁ ତା' ବୋଲି ତାଙ୍କୁ ଘୃଣା କରିବି କାହିଁକି ?

ପ୍ରୀତି—ଓ, ଅଭିମାନ ତ ଖୁବ୍ ଦେଖୁଚି !

ଛାୟା—ପ୍ରୀତି ! ଅଭିମାନ କରିବି କାହା ଉପରେ ? ତାହାଠିଁ ମୋର କି ଅଧିକାର ଅଛି ? ସେ କଥା ଥାଉ, ତୁ କୁଆଡେ ତାହାଦରୁ ଶୁଣେ ?

ପ୍ରୀତି—ମତେ ଭୁଲେଇବାର ଚେଷ୍ଟା କରନା ଛାୟା, ତୁ ତୋର ମନର କଥା ମତେ ଲୁଚେଇବାକୁ ଯାଉଚୁ । ହେଲେ ମୋ ପାଖରେ ଅଜେ ଅପେ ଧରାପଡ଼ ଯାଉଚି । ଦେଖିବୁ ଛାୟା, ଦିନେ ତୁ ତୋର ମନର ଦେବତାଙ୍କୁ ଫେରି ପାଇବୁ ।

—ଗୀତ—

ଧୀରେ ରହିଯା, ସୋହାଗିନୀ ରହି ଯା—
(ତୋର) ଗୁମରରେ ଯେତେ ଗୁମରେ ବେଦନା
ମନ ଖୋଲି କହିଯା । ୦ ।
ଲାଗିଛି ଢାକର ପ୍ରୀତି ଫୁଲବନେ,
ମେଲିବ କଳିକା ହସିବ ମଉନେ ;

ଥୋଇ ତା ସବଗ ନୟନ ପଲ୍ଲବେ—
ସବୁ ମନ ମଳି ଧୋଇ ଯା ।
ରହିଯା ଧୀରେ·· ॥ ୧ ॥

ପୀୟୂଷ ପଣାରେ ଜହର ପରଖ,
ଦେଇ ଚୋକିବାର ଅସହଣି ଦୁଃଖ
ପାଇଛୁ ଯେବେ ତୁ ଲାଞ୍ଛନା ଗୋପନେ,
ଅଙ୍ଗାର ଭାର ବାହି ଯା—
ରହିଯା, ଧୀରେ···॥ ୨ ॥

ଜାଣୁ ତ ଦେବତା ମୂକ, ପଥରର
ପଦତଳେ ତାର ଶତ ଉପଚାର
ମୁକ୍ତାଫୁଲ ସମ ଯଉବନ ତୋର, ତା ଚରଣ ତଳେ ଥୋଇ ଯା—
ରହିଯା···ଧୀରେ ॥ ୩ ॥

ଛାୟା—ଯଦି ଦରକାର ପଡ଼େ, ତାଙ୍କର ସ୍ମୃତି ଚିହ୍ନକୁ ବହନ କରି ମୁଁ ଚିରକୁମାରୀ ରହିବି । ସେଥିରେ ମୋର ଭାବନା ନାହିଁ, ପ୍ରୀତି !

ପ୍ରୀତି—ବିଚ୍ଛେଦ ପରେ, ଏଇ କଥା ପଦକ ପ୍ରତ୍ୟେକ ଅବିବାହିତ ଯୁବକ ଓ ଯୁବତୀଙ୍କ ମୁହଁରେ ଶୁଣାଯାଏ । ଗଳ୍ପରେ, ଉପନ୍ୟାସରେ ପଢ଼ିଛି, ସିନେମା, ଥିଏଟରରେ ବି ଦେଖିଛି ।

ଛାୟା—ନା ଭାଇ ! ମୁଁ ଯାହା କହୁଛି, ସେଇ ମୋର ମନର କଥା । ଜହରବାବୁଙ୍କୁ ମୁଁ ଭଲ ପାଇଥିଲି, ସେଇ ଭଲ ପାଇବାର ଅସମ୍ମାନ କରିପାରିବି ନାହିଁ, ସେଇ ଭଲ ପାଇବାର କର୍ମ୍ମମ ସ୍ମୃତି ଚିହ୍ନ ମୋର କୁମାରୀ ଜୀବନର ସମ୍ବଳ ହୋଇ ରହିଥିବ ।

ପ୍ରୀତି—ତା’ହେଲେ ପ୍ରତିଜ୍ଞା କରି ସାରିଚୁ ? ବେଶ୍ ଭଲ କଥା, କିନ୍ତୁ ଛାୟା, ତୋ ଜୀବନ ନାଟକର intervalରେ ସେ ପ୍ରତିଜ୍ଞା ଭାଙ୍ଗି ନଯାଏ ଯେମିତି । ତା’ହେଲେ କିନ୍ତୁ tragedy ଆରମ୍ଭ ହୋଇଯିବ ।

ଛାୟା—ସବୁଦିନେ ତୋର ଖାଲି ଥଟ୍ଟା—ଏଣୁ ତେଣୁ ପାଞ୍ଚଟା କଥା ନ କହିଲେ ତୋତେ ଭଲ ଲାଗେନା, ନା ?

ପ୍ରୀତି—ହେଲା, ମୋ କଥାଗୁଡ଼ାକ ଯେବେ ତୋତେ ଖରାପ ଲାଗୁଚି, ମୁଁ ପଛକେ withdraw କରି ନେଉଚି (ଯିବାକୁ ବାହାରିଲା, ତେଣୁ ଚୌଧୁରୀ ପଶି ଆସିଲେ) ।

ଛାୟା—ଯାଉଚୁ ନା କଣ ? ଏଇତ ଆସିଲୁ—

ପ୍ରୀତି—ହଁ, ମୁଁ ଯାଉଚି । ମଜସା ମାଉସୀ ଘର ପାଖରୁ ଆସିଚନ୍ତି—ତାଙ୍କ ସାଙ୍ଗରେ ଦେଖା କରିବାକୁ ଯାଉଁ ଯାଉଁ ବାଟରେ ହଠାତ୍ ତୋ କଥା ମନେ ପଡ଼ିଗଲା । ଭାବିଲି କେମିତି ଅଛୁ ଦେଖି ଆସେ । ବୁଲିବାକୁ ଯିବୁ ମୋ ବଗିରେ ?

ଛାୟା—ନା, ତୁ ଯା । (ପ୍ରୀତିର ପ୍ରସ୍ଥାନ) ନମସ୍କାର ! ଆପଣ ଭାଇଙ୍କୁ ଖୋଜୁଚନ୍ତି ? ଭାଇ ନାହାନ୍ତି, ବାହାରକୁ ଯାଇଛନ୍ତି, ଆପଣ ବସନ୍ତୁ । (କହୁ କହୁ ଚାଲି ଯାଉଥିଲେ)

ଚୌଧୁରୀ—ମୁଁ ବସୁଚି ; ତୁମେ ଶୁଣ ଛାୟା, ତୁମ ସାଙ୍ଗରେ ମୋର ଟିକିଏ କଥାବାର୍ତ୍ତା ଅଛି । ( ବସିଲେ )

ଛାୟା—କଣ କହନ୍ତୁ । (ବସିଲା )

ଚୌଧୁରୀ—ସେଦିନ ତୁମପାଇଁ ଯେଉଁ neckalceଟି ଆଣିଥିଲି ତୁମେ ତାକୁ ଫେରାଇ ଦେବାଦ୍ୱାରା ମୋ ମନରେ କେତେ କଷ୍ଟ ହୋଇଚ, ଭାଷାରେ କହି ପାରିବିନି ଛାୟା ! ଆଜି ତୁମକୁ ସେଇ ଉପହାରଟି ନେବାକୁ ହବ । (ବାହାର କଲେ)

ଛାୟା—ଉପହାର ! ମୁଁ ତ ଆପଣଙ୍କର କିଛି ଉପକାର କରିନାହିଁ ?

ଚୌଧୁରୀ—ଉପକାର ଅପକାରର ପ୍ରଶ୍ନ ଉଠୁନାହିଁ, ଛାୟା । ମୁଁ ବାହାରେ, ତୁମକୁ ନବାକୁ ହବ । ଉପକାର ତୁଏତ ତୁମେ ନ କରିବ, ତୁମର ସ୍ୱଳ ସୁଧାଂଶୁ ବାବୁ ତ କରିଚନ୍ତି ।

ଛାୟା—ତା'ହେଲେ ଉପକାର ସ୍ୱାରଙ୍କୁ ଦିଅନ୍ତୁ । ସେ ଅପଣଙ୍କର Private Secretary, ଦରକାର ପଡ଼ିଲେ ତାଙ୍କଦ୍ୱାରା ଅତୁର ଅନେକ ବଡ଼ ବଡ଼ କାମ କରେଇ ପାରିବେ । ମୁଁ ବଡ଼ ଦୁଃଖିତ Mr. Choudhuri, ମୋଦ୍ୱାରା ଅପଣଙ୍କର କିଛି ହେଇପାରିବ ନାହିଁ ।

ଚୌଧୁରୀ—ନିଜକୁ ଛୋଟ ମନେକରନା ଛାୟା ! ତୁମେ ବୁଦ୍ଧିମତୀ । କୌଣସି ପ୍ରକାର ଛଳନା କରି ମୁଁ ତୁମକୁ ଠକିବାକୁ ଯାଉନି । ମୋର ମନକଥା ତୁମକୁ ଅନେକଦିନ ଅଗରୁ ତୁଏତ କହି ପାରିଥାନ୍ତି ; ମାତ୍ର scoundrel ଜହରଟା ଥିଲା ମୋ ବାଟରେ କଣ୍ଟା ।

ଛାୟା—ଜହରବାବୁଙ୍କ ନାଁରେ ମିଥ୍ୟା ପ୍ରଚାର କରି ଅପଣ ତାଙ୍କର ସର୍ବନାଶ କରିବାକୁ ଯାଉଚନ୍ତି । ତାଙ୍କୁ ବାଟରୁ ହଟାଇବାକୁ ସ୍ୱାରଙ୍କୁ ଅପଣ ଅନେକ ଟଙ୍କା ଅପଥା ଦାନ କରିଚନ୍ତି ।

ଚୌଧୁରୀ—ସେଇ ଦାନର ମୂଳରେ ତୁମକୁ ପାଇବାର ଇଚ୍ଛା ମୋର ଅନେକଦିନରୁ ଥିଲା—ଅନ୍ତତଃ ଯେଉଁଦିନୁ ତୁମ ସମ୍ପର୍କରେ ଅସିଚି । ମୋର ସ୍ତ୍ରୀ ନିରୁପମାର ମୃତ୍ୟୁ ପରେ ଦୀର୍ଘ ୫ ବର୍ଷ କଟିଯାଇଚି, ଭଲ ପାଇବାର ସ୍ୱପ୍ନ ମୁଁ କେବେ-ହେଲେ ଦେଖିନି, କିନ୍ତୁ ଯେଉଁଦିନଠୁଁ ତୁମେ ଅସି ମୋ ଅଖି ସାମନାରେ ଦେଖା ଦେଇଚ, ସେଇଦିନୁ—

ଛାୟା—ଅପଣ ମତେ ବିବାହ କରିବାର କଳ୍ପନା କରିଚନ୍ତି, ଏଇ ତ ?

ଚୌଧୁରୀ—Exactly ମିସ୍ ଛାୟା ! କୋଟିପତିର ସଂସାର ତୁମକୁ ପାଇଲେ ଗୌରବାନ୍ୱିତ ହବ । ସାରାଜୀବନ ଉପଭୋଗ କରିବାକୁ ମୋର ଅଛି ରାଶି ରାଶି ଟଙ୍କା, ଅଗାଧ ଐଶ୍ୱର୍ଯ୍ୟ । ମୋର କର୍ତ୍ତୃତ୍ୱ ଘୋଷଣା କରିବାକୁ ଚିମ୍ନିର ଧୂଆଁ ସାରା ଆକାଶକୁ ପାଉଁଶିଆ କରି ଘୂରିବୁଲେ ମେସିନ୍‌ର ଘର ଘର ଚକା । ବଞ୍ଚି ରହିବାର ମୋହ ଶହ ଶହ, ହଜାର ହଜାର ମଜ୍‌ଦୁରଙ୍କୁ ମୋର କ୍ରୀତଦାସ କରି ରଖିଛି; ଏଇ ସମସ୍ତ ସୌଭାଗ୍ୟର ଭାଗୀହେବ ତୁମେ ଯେବେ ମୋର ପ୍ରସ୍ତାବରେ ରାଜିହୁଅ, ତା'ହେଲେ ମୁଁ ତୁମ ଭାଇଙ୍କ ସଙ୍ଗେ କଥାବାର୍ତ୍ତା କରିବି । ଅଉ ମୋର ବିଶ୍ୱାସ, ସୁଧାଂଶୁ କେବେହେଲେ ମୋ କଥାର ବାହାର ହବନାହିଁ କାରଣ ସେ ମୋର Private Secretary ଓ ଅନ୍ତରଙ୍ଗ ବନ୍ଧୁ, ସେଇ ଦୃଷ୍ଟିରୁ—

ଛାୟା—ଆପଣ ଅନ୍ଧ ! ଆପଣ କଣ ମନେ କରୁଛନ୍ତି, ଏତେଦିନ ଧରି ଜହରବାବୁଙ୍କ ପାଖରେ ମୁଁ ଭଲ ପାଇବାର ଯେଉଁ ଅଭିନୟ କରି ଆସିଛି—

ଚୌଧୁରୀ—ସେ ଅଭିନୟ ଭିତରେ କୌଣସି ସତ୍ୟତା ଥିଲା ନା କଣ ?

ଛାୟା—(କୃତ୍ରିମ ହସ ହସି) ଭଲ ପାଇବାର ଅଭିନୟ କୌଣସି ସ୍ତ୍ରୀ କରିପାରେ ନା ଯଦି ସେ ଅଭିନେତ୍ରୀ ବା ପତିତା ହୋଇ ନ ଥାଏ । ଜହରବାବୁଙ୍କ ସମ୍ପର୍କରେ ଆସି ତାଙ୍କର ଦୀକ୍ଷା ନେଇ ମୁଁ ସ୍ଥିର କରିଛି, ଯେବେ ଦରକାର ପଡ଼େ, ସାରାଜୀବନ ଅବିବାହିତା ରହି ମଧ୍ୟ ମୁଁ ମୋର ବାଟ ଠିକ୍ କରିନେବି ।

ଚୌଧୁରୀ—ଅଫଶୋଷ, ଅଫଶୋଷ ଛାୟା ! ତୁମେ ତା'ପାରିବ ନାହିଁ, କାରଣ ମୁଁ ଜାଣେ ନାହିଁ ପଢ଼ିବାକୁ ସ୍ତ୍ରୀଜାତିର ବିଶେଷତ୍ୱ । ମୁଁ ଅନୁରୋଧ କରୁଛି, ତୁମେ ମୋର ଏହି ଉପହାରଟି ଗ୍ରହଣ କର । ମୋ ପ୍ରସ୍ତାବରେ ରାଜିହୁଅ । ମୁଁ ତୁମକୁ ବିବାହ କରିବାକୁ ଚାହେଁ ।

ଛାୟା—ଆପଣ ଯାହା ଚାହାନ୍ତି, ମୁଁ ସେ ଟିକ୍ ସେଇଆ ଚାହେଁ, ଆପଣ ଏ କଥା ଭାବୁଚନ୍ତି କାହିଁକି ? ଦୟାକରି ଚାଲିଯାନ୍ତୁ ! ଭାଇ ଘରେ ନାହାନ୍ତି ; ଅନ୍ୟ ସମୟରେ ଆସିବେ ।

ଚୌଧୁରୀ—ଛାୟା !

ଛାୟା—ଆପଣ ଚାଲିଯାନ୍ତୁ । ମୋର ଯାହା କହିବାର କଥା କହି-ସାରିଛି । ଜୀବନରେ ଜଣକୁ ଭଲ ପାଇଥିଲି, ତେଣୁ ଶିକ୍ଷା ମିଳିଛି । ଭଗବାନ ନ କରନ୍ତୁ, ମୋର ଯେମିତି ସେ ଦୁର୍ବୁଦ୍ଧି ନ ହୁଏ । ସେ ଦିନ ଜହରବାବୁ କହୁଥିଲେ ଭଲପାଇବା ବେକାରର ଖିଆଲ । ଆଜି ବୁଝିଛି, ଭଲ ପାଇବା କେବଳ ବେକାରର ଖିଆଲ ନୁହେଁ, ବଡ଼ଲୋକଙ୍କର ମଧ୍ୟ ସେ ଖିଆଲ ଅଛି ।

ଚୌଧୁରୀ—ଦର୍ଶନଶାସ୍ତ୍ରର ଦରକାର ନାହିଁ, ଛାୟା । ମୋ ପ୍ରସ୍ତାବରେ ତୁମକୁ ରାଜି ହବାକୁ ହବ । ସୁଧାଂଶୁକୁ ମୁଁ ଅନେକ ଟଙ୍କା ଦେଇଛି । ବର୍ତ୍ତମାନ ସୁଦ୍ଧା ତୁମ ଘରର ଭବିଷ୍ୟତ ସୁଖ ଓ ସୁବିଧାଲାଗି ମୁଁ Cheque ପରେ Cheque କାଟି ଚାଲିଛି, ତା ମୂଳରେ କେବଳ ଜହରକୁ ଜବତ କରିବା ଅଭିସନ୍ଧି ନ ଥିଲା, ତୁମକୁ ପାଇବାର ମହତ ଉଦ୍ଦେଶ୍ୟ ମଧ୍ୟ ଥିଲା ।

ଛାୟା—ଦିନ ଆସିବ, ଆପଣଙ୍କ ଠିକାର ବଳ ହାର ମାନିବାକୁ ବାଧ୍ୟ ହବ । ଆପଣମାନେ କହରବାବୁଙ୍କ ନିକଟରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହେବେ ।

ଚୌଧୁରୀ—That's very nice……ସୁନ୍ଦର ତୁମର ପରିକଳ୍ପନା । ବିଧବା ସଧବା ସହିତ କହରର ଗୁପ୍ତପ୍ରଣୟ କାହାଣୀ ଉପନ୍ୟାସର କଥାବସ୍ତୁ ନୁହେଁ । ସମ୍ବାଦପତ୍ର ତାର ସତ୍ୟତା ପ୍ରଚାର କରିଛି, ଆଜି ମଧ୍ୟ ପ୍ରମାଣ କରିଛି । ଦେଖିବ ଛାୟା ! କହର ଦିନେ ସମାଜ ଛାଡ଼ି, ଦେଶ ଛାଡ଼ି ଚାଲିଯିବ ତାର ପାପର ପସରା ନେଇ । ଆଜି ତାର ସୂଚନାମାତ୍ର ଆରମ୍ଭ ହୋଇଛି ।

ଛାୟା—ଆପଣ ଦୟାକରି କଥା ଶେଷ କରନ୍ତୁ । ମୁଁ ଆପଣଙ୍କ ସହିତ ରାଜନୀତି କିମ୍ବା ଅର୍ଥନୀତି ଚର୍ଚ୍ଚା କରିବାକୁ ଚାହୁଁନା ।

ଚୌଧୁରୀ—ଛାୟା, ସୁଧାଂଶୁକୁ ମୁଁ ବହୁତ ଟଙ୍କା ଦେବି । ମୋର Factoryର ଗୋଟାଏ share ମଧ୍ୟ ଦେଇପାରେ । ଯେବେ ତୁମର ଭାଇ ରାଜି ନ ହୁଅନ୍ତି, ମୁଁ ପ୍ରତିଶ୍ରୁତି ଦେଉଛି ଛାୟା, ଟଙ୍କା ଦେଇ ମୁଁ ତାଙ୍କର ମୁହଁ ବନ୍ଦ କରିଦେବି ।

ଛାୟା—ଉଃ, ଆପଣ କି ସାଂଘାତିକ ! ପ୍ରଥମେ ମୁଁ ଭାବିଥିଲି…

ଚୌଧୁରୀ—ତୁମେ ଯାହା ଭାବ ନା କାହିଁକି ମତେ ଖାଲି ପଦେ କହିବ ଦିଅ । ଯୋଗ୍ୟ ଜଣଙ୍କର ଅଭାବରେ କୋଟିପତି ବ୍ୟବସାୟୀର ସଂସାର ଶୂନ୍ୟ ହୋଇ ପଡ଼ିଛି, ତାର ଜାଗା ଦଖଲ କରି ତୁମେ ସେ ସଂସାରର ପୂର୍ଣ୍ଣତା ଆଣିବ କି ନା ? କୁହ ଛାୟା ! ତୁମକୁ କହିବାକୁ ହବ । ବହୁତ ଆଶା ନେଇ—

ଛାୟା—ଆପଣ ନିର୍ବୋଧ ! ମୁଁ ଆପଣଙ୍କର କୌଣସି କଥାର ଜବାବ ଦବାକୁ ଚାହେଁନା । ଆପଣ ଚାଲିଯାନ୍ତୁ—(ପ୍ରସ୍ଥାନୋଦ୍ୟତ)

ଚୌଧୁରୀ—(ବାଧାଦେଇ ନିଜ ଅଙ୍ଗକୁ ଉଡ଼ ଆଣିଲେ) ଛାୟା—

ଛାୟା—ମିଃ ଚୌଧୁରୀ ! !

( ଝଡ଼ ପରି ପ୍ରବେଶ କଲେ ଦେବକୁମାର ଓ ସୁଧାଂଶୁ )

ସୁଧାଂଶୁ—ରାଏସାହେବ ଅମଳ ଚୌଧୁରୀ ! (ଚୌଧୁରୀ ଛାୟାକୁ ଛାଡ଼ି ଅପରାଧୀ ପରି ଛିଡ଼ା ହେଲେ) ଆପଣ ଦୟାକରି ବିଦାୟ ନିଅନ୍ତୁ । ଅମଳ ଚୌଧୁରୀ ଅବାଧରେ ମୋର ଘର ଭିତରେ ପଶି ମୋର ଖାନ୍‌ଦାନ୍ ଉପରେ ମଧ୍ୟ ପ୍ରଭୁତ୍ୱ ବିସ୍ତାର କରି-ପାରନ୍ତି, ଏ ଧାରଣା ମୋର ନ ଥିଲା ।

ଚୌଧୁରୀ—ସୁଧାଂଶୁ !

ଛାୟା—ଛିଃ ! ମତେ ଏମିତିଭାବରେ ଅପମାନ କରିବାକୁ ତୁମେ ଯେ ଚୌଧୁରୀଙ୍କର ଗୋଲାମୀ କର, ଅଜ ରାଣି ରାଣି ଟଙ୍କାର ଦାନ ଗ୍ରହଣ କର, ସେ କଥା ମୋର କଳ୍ପନାର ବାହାରେ ଥିଲା । (ପ୍ରସ୍ଥାନ)

ଦେବ—ସୁଧାଂଶୁ ବାବୁ !

ସୁଧାଂଶୁ—ଛାୟା ମିଛ କହୁନାହିଁ, ଦେବକୁମାର ! ଟଙ୍କା ଲୋଭରେ ମୁଁ ଗୋଟାଏ ପଶୁର ଦାସତ୍ୱ କରୁଥିଲି । ଗୋଟାଏ ଶୟତାନ୍‌ର ଗୋଲାମୀ କରୁଥିଲି ।

ଚୌଧୁରୀ—ସୁଧାଂଶୁ—

ସୁଧାଂଶୁ—ରାଏସାହେବ, ଲାଲ ଆଖି ଦେଖାନ୍ତୁ ନାହିଁ । ଲୁଚକରି ଖାତିରରେ, ଟଙ୍କାର ମୋହରେ ମୁଁ ଜହରବାବୁଙ୍କର ନିଷ୍କଳଙ୍କ ଚରିତ୍ରରେ କାଳି ବୋଳି ଦେଇଛି । ଦେଶ ଯାହାକୁ ମହା-ପୁରୁଷ ବୋଲି ପୂଜା କରେ, ମୁଁ ତା'ର ସର୍ବନାଶ କରିବାକୁ

ପଡ଼େଇନ ; ମାତ୍ର ସେଇ ଖାତର୍‌ରେ ମୁଁ ଛାୟାର ଉବିଷ୍ୟତ, ମୋର ଖାନ୍‌ଦାନ୍‌ର ଇଜ୍ଜତ୍ ନଷ୍ଟ ହୋଇପାରେ, ଏ ବଦ୍-ଖିଆଲ ଆପଣଙ୍କ ମୁଣ୍ଡରେ ପଶିଲା କେମିତି Mr. Choudhuri ? ମୁଁ ଏଇ ମୁହୂର୍ତ୍ତିରେ ମୋ ଗୃହରରୁ ଇସ୍ତଫା ଦଉଛି ।

ଚୌଧୁରୀ—କିନ୍ତୁ ସୁଧାଂଶୁ, ମୁଁ ତ ଅନ୍ୟାୟ ପ୍ରସ୍ତାବ କରେନି ।

ସୁଧାଂଶୁ—ଆପଣ ଭୁଲ ଯାଉଚନ୍ତି, ଛାୟା ମୋର ଭଉଣୀ । ସେଦିନ ଜହର ବାବୁଙ୍କ ନିକଟରେ ମୁଁ ଛାୟାର ଯୋଗ୍ୟ ପରିଚୟ ଦେଇଥିଲି, ସେ କେବଳ ଆପଣଙ୍କ ଖାତିର୍‌ରେ । ଏଇ ଟିକିଏ ଆଗରୁ ଆପଣଙ୍କର ଯୋଗ୍ୟ ବଂଶଧାର ପରିଚୟ ପାଇଛି, ସେ କଥା ମୋର ଶରିରଧନକୁ ମନେ ରହିବ ।

ଦେବ—ଜହରବାବୁଙ୍କୁ ବଦ୍‌ନାମ୍ କରି ଆପଣ ଦେଶର ଯୋଗ୍ୟ କ୍ଷତି କରିବାକୁ ଯାଉଚନ୍ତି, ସେଥିପାଇଁ କେତେ କେତେ-ହେଲେ ଆପଣଙ୍କୁ କ୍ଷମା କରିବନି Mr. Choudhury !

ଚୌଧୁରୀ—ଦେବକୁମାର ! ମୋର ହଜାରେ ଟଙ୍କା ହଜମ କରିସାରି ନିର୍ଲିପ୍ତଭାବରେ ମତେ ଉପଦେଶ ଦବାକୁ ଆସିଚ ତୁମେ !

ଦେବ—ବଡ଼ଲୋକର ଟଙ୍କା ହଜମ ହବାର ନୁହେଁ ସ୍ୱୀଏସାହେବ ! ଏ ଚେକ୍ ଖଣ୍ଡିକ ସବୁବେଳେ ମୋର ପାଖେ ପାଖେ ଅଛି । (ବାହାର କରି) ଏଇ ନିଅନ୍ତୁ Sir, ମୁଁ କେବଳ ଫେରେଇ ଦବା ସୁଯୋଗର ଅପେକ୍ଷାରେ ଥିଲି । (ଫେରେଇ ଦେଇ) ଭଲଭାବରେ ଦେଖି ନିଅନ୍ତୁ Sir ! ଦେବକୁମାର ଲୋଫର୍, ଭ୍ୟାଗାବାଣ୍ଡ୍, ଗୁଣ୍ଡା ଉପରେ ଛାଡ଼ ଗୁଜରାଣ ଚଳାଏ । Film studioର ଅସମ୍ଭବ ପରିକଳ୍ପନା ନେଇ ଅନେକ ବାଜେ କଥା ଗପେ, କିନ୍ତୁ ଆପଣଙ୍କ ପରି ଜୀବନ ନେଇ

ସେ ଖେଳ ଖେଳେ ନା । ତାହାର ଖାନ୍‌ଦାନ୍ ଇଜ୍ଜତ୍ ଉପରେ ହାତ ଦେଇ ଧରା ପଡ଼ି ଶେଷରେ ଅପରାଧୀ ଭଳି ମୁଣ୍ଡ ନୁଆଇଁ ଛୁଟିଯାଏ ନା ।

ଚୌଧୁରୀ—ଦେବକୁମାର !—

ଦେବ—(ଲମ୍ବା ହସ ହସି) ମିଃ ଚୌଧୁରୀ ! ଅଛି ଶଯ୍ୟତାନ୍ ଭିତରେ ମଣିଷର ସ୍ୱରୂପ ଦେଖି ଚମକି ପଡ଼ନ୍ତୁ ନାହିଁ ।

ଚୌଧୁରୀ—ସୁଧାଂଶୁ, ତୁମରି ଯୋଗୁଁ ଏଇ Street ଲେପର୍ ଭ୍ୟାଗାବଣ୍ଡ ମତେ ଅପମାନ କରୁଛି, ଏ କଥା ମୁଁ ଭୁଲିବି ନାହିଁ । (ପ୍ରସ୍ଥାନୋଦ୍ୟତ)

ସୁଧାଂଶୁ—ଶୁଣିଯାନ୍ତୁ Rai Saheb ! ଅଉ ଥରେ ଏଠି ଯେମିତି ଆପଣଙ୍କର ପାଦ ନ ପଡ଼େ । ଏ ଜଘନ୍ୟ ପ୍ରସ୍ତାବ ନେଇ ଆପଣ ନେତେବେ ଅନେଇବାର ଚେଷ୍ଟା କରନ୍ତି, ତା'ହେଲେ ଜହର ଭଳି ଦୁର୍ଦ୍ଦାନ୍ତ ଲୋକର ସର୍ବନାଶ କରିବାକୁ ଯେ ପଛେଇନି, ଆପଣଙ୍କ ଭଳି ନିର୍ବୋଧ ଜାନୁଆରକୁ ମଧ୍ୟ ଗୁଳି କରିବା ତା'ପକ୍ଷରେ ଅତି ମାମୁଲି କଥା ।

ଚୌଧୁରୀ—ସୁଧାଂଶୁ !

ସୁଧାଂଶୁ—Walk out Mr. Choudhury, you walk out.

( ସୁଧାଂଶୁ ରାଗରେ ହୁଙ୍କି ପଡ଼ିଲେ—ଚୌଧୁରୀଙ୍କର ପ୍ରସ୍ଥାନ )

ଦେବ—Thank God very well as He likes. ମୋର ମନେହୁଏ ଶ୍ରୀମାନ୍ ଜାନୁଆର ବୋଧହୁଏ ଅଉଥରେ ଏ ଦୁଃସାହସ କରିବେନି । ଅଭଦ୍ରତାର ଯଥୋଚିତ ଶାସ୍ତି ଦିଆହୋଇଛି । ( ଏତିକିବେଳେ ଛାୟା ଦ୍ରୁତବେଗରେ ସେଇ ବାଟରେ ଗୁଳି ଯାଉଥିଲା )

ଦେବ—ଛାୟାଦେବୀ ! ଯାଉଚନ୍ତି କୁଆଡ଼େ ?

ସୁଧାଂଶୁ—ଛାୟା ! କୁଆଡେ ଯାଉଚ୍ ?

ଛାୟା—( ଥମକି ଛିଡାହୋଇ ) ମତେ କିଛି ପଚାରନା ଭାଇ, ମୋର ଦୁଇପାଦ ମତେ ଯୋଉଠିକି ନବ, ମୁଁ ସେଇଆଡେ ଯିବ । ଛେଟେବ ଏତିକି ମନେ ରଖ, ଏ ଘର ସାଙ୍ଗରେ ମୋର ଆଉଟୁ କିଛି ସଂପର୍କ ନାହିଁ । ( ଗୃହଲଗନ୍ତ )

ଦେବ—ଛାୟାଦେବୀ ! ଛାୟାଦେବୀ ! ! ଏ କଣ, ଗୃହଲଗଲେ ଯେ—

ସୁଧାଂଶୁ—ଦେବକୁମାର ! ସେ ଯାଉ, ତାଙ୍କୁ ଯିବାକୁ ଦଅ । ଭଗ-ନଙ୍କର ବନ୍ଧ ଥରେ ଭାଙ୍ଗିଗଲେ, ସେ ଆଉ ଫେରିବ ନାହିଁ, ମୁଁ ଜାଣେ ସେ ଆଉ ଡାକ ଶୁଣିବନି ।

ଦେବ—ତା'ହେଲେ ଉପାୟ ?

ସୁଧାଂଶୁ—ବ୍ୟସ୍ତ ହୁଅନି, ଦେବକୁମାର ! ସେ କୋଉଠିକି ଯିବ ମୁଁ ଜାଣେ । ଜହରର କୁହୁକମନ୍ତ୍ର ତାଙ୍କୁ ଟାଣି ନେଉଛି ତା'ର ପାଖକୁ । ଅଚ୍ଛା ମୁଁ ବି ଦେଖିବି । ମୋର ଖାନ୍‌ଦାନ୍‌ର ଇଜ୍ଜତ୍ ଯେମିତି ନଷ୍ଟ ନ ହୁଏ, ମୋର ପବିତ୍ର ବଂଶରେ ଯେମିତି କାଳି ନ ଲାଗେ ।

---

## ଚତୁର୍ଥ ଦୃଶ୍ୟ

( ଘନଶ୍ୟାମଙ୍କ ଗୃହ ସମ୍ମୁଖ ଅଗଣା )

[ ଯିନ୍ ଉଠିବା ପରେ ଦେଖାଗଲା—ବାମପାର୍ଶ୍ୱବାଡନରେ ଘରୁ ବାହାର ଅଛୁତ ଜ୍ୟୋତି ; ପଛେ ପଛେ ପ୍ରବେଶ କଲେ ଘନଶ୍ୟାମ ଡାକି ଡାକି ]

ଘନ—ଜଗତ ! ମୋ କଥା ମାନ୍, ଘରକୁ ଫେରିଆ—ବୁଢ଼ା ବାପ ଉପରେ ଅଭିମାନ କରନା ବାପ !

କେମ୍ପାଣ—ଅଭିମାନ କର ସବୁ ଛାଡ଼ି ଗୃହକୁ ଯାଉଛ ବାପା ! ମୋର ଘରେ ରହିବାର ବାଟ ତୁମେମାନେ ସବୁଦିନପାଇଁ ବନ୍ଦ କରିଦେଇଛ ।

ସନ—କଲିକତାରୁ ଫେରି ହଠାତ୍ ବାପା ନାଥିଆ ଯୋଗେ ଖବର ଦେଲ, ମୁଁ କେବେହେଲେ ଭାବି ନଥିଲି ତତେ ଅଜ ଜୀବନରେ ଦେଖିବ ବୋଲି । ମୁଁ ସ୍ୱପ୍ନରେ ଭାବି ନଥିଲି ତୁ ପୁଣି ଘରକୁ ଫେରିବୁ !

କେମ୍ପାଣ—ସେଇଥିପାଇଁ ତୁମ୍ଭେମାନେ ସଧବା ହାତରୁ ଶଙ୍ଖା ଭାଙ୍ଗି, ତାର ମୁଣ୍ଡର ସିନ୍ଦୂର ପୋଛି ତାକୁ ବିଧବା କରେଇଲ ଅଜ ଶେଷରେ ଛତରଖାଇ ଭିକାରୁଣୀ ପରି ମାଡ଼ମାରି ତଡ଼ିଦେଲ ?

ସନ—କଣଅ !

କେମ୍ପାଣ—ପ୍ରାଣନାଥ ଜୀବନ ନେଇ ରାତାରାତି ପଳାଇ ଅସିଲ୍ଲ, ଗୁଣ୍ଡାମାନେ ଯେତେବେଳେ ଆମ ବସାର ଗୃହପାଖରେ ଘେରିଗଲେ, ସେତେବେଳେ କେହି ବିଶ୍ୱାସ କରିପାରନ୍ତା ନାହିଁ ଯେ ଜଣେ ଖସି ଅସି ପାରିବ । କିନ୍ତୁ ଭଗବାନଙ୍କ ଦୟାରୁ ମୁଁ ହାଣମୁହଁରୁ ବର୍ତ୍ତି କୌଣସିମତେ ପଳାଇ ଅସିଲି । ତା'ପରେ ଅନେକଦିନ ଏଣେ ତେଣେ ବାଟ-ବଣା ହେଇ ବୁଲି ବୁଲି ଶେଷରେ ଯେତେବେଳେ ଘରେ ଅସି ପହଞ୍ଚିଲ, ଦେଖୁଛ ଏ ଘରେ ମୋପାଇଁ ଅଉ ଜାଗା ନାହିଁ । ପୁଅ ବୋହୂଙ୍କୁ ଘରୁ ତଡ଼ିଦେଇ ବୋଉ ଯେମିତ ଶାନ୍ତିରେ ନିଶ୍ୱାସ ମାରୁଛ ।

ସନ—ବୋଉ ବୋଲି କହନାହିଁ ରେ ଜଣଅ ! ଅସୁରୁଣୀ ସେ । ଏତେ ଦୁଃଖରେ ବି ତାର ବିଷଦାନ୍ତ ଝଡ଼ି ନାହିଁ ।

ବେମାସରେ ପଡ଼ ପଡ଼ ମରୁ ମରୁ ବଂଚି ଯାଉଚି ସେଥିପାଇଁ ସେ ରାକ୍ଷସୀ ମନରେ ଭାରି ଦୁଃଖ । ମୁଁ ମରି ଯାଇଥିଲେ ସେ ଭାରି ଖୁସି ହେଉଥାନ୍ତା ।

ପିଅର—( ପ୍ରବେଶ କରି ) ବାପ ପୁଅ ଦି'ଜଣଯାକ ମେଣ୍ଟ ବାନ୍ଧି ମୋ ନାଁରେ ବଦ୍‌ନାମ କରୁଚ ? ହଉ, ତୁମ ବିଗ୍ଭର ଭଗବାନ କରିବେ, ମୋର ଏବେ ଦୋଷ କଣ ? ନାଥିଅ କଥାରେ ବାଇହେଇ ବୋହୂ ଘର ଛାଡ଼ି ପଳେଇଲା । ମୁଁ କଣ ତଡ଼ି-ଦେଲି ନା, ମାରିଦେଲି ମ ? ଏଇଲିଟି ନାଥିଅ କଥା ନେଇ ଦପଦପ କରୁଥିଲଟି, ଜାଅଁଣୀଘର ଝିଅ ମତେ ପେଲିଦେଲା ନଯ, ମୋ ମୁଣ୍ଡ ଫାଟି ଯୋଉ ରକତ ଯାଇଚ, ସେ କଥା ହରାନାଙ୍କ ଦେଖିଚ । ହେଇଟି, ଦାଗପରି ଅଛିଯାଏ ଲିଭିନାଇଁ !

ଘନ—ଶୁଣୁଚୁ, ଶୁଣୁଚୁ ତୋର ବୋଉର କଥା ?

ଜଗ—କାହାର କଥାରେ କଣ୍ଟୁ ଯାଏ ଅସେନା ବାପା ? ମୁଁ ମୋ ବାଟରେ ଗ୍ଭଲିଯାଉଚି । ମୋର ମଲାଖବର ପାଇଲା ପରେ ଏତେଦିନ ଯେମିତି କଟେଇଚ ସେମିତି ଘର ଦ୍ୱାର, ବାଡ଼ି ବଗିଚା, ଟଙ୍କା ସୁନା ନେଇ ବେଶ୍ ଚଳିପିବ । ତୁମମାନଙ୍କ ଲେଖାରେ ଜଗଅ ମରିଚି ତ ମରିଚି । ଏ ଘରେ ମୁଁ ଅଉ ପାଣି ଛୁଇଁବି ନାଇଁ । ରାଧାକୁ ପାଏ ଅବା ନପାଏ, ଏଇ ମୋର ଶେଷ ଦେଖା ।

ପିଅର—ମଙ୍ଗ, ମାଇକିନାଅଠା ସକାଶେ ବାପାକୁ ଏମିତି ଟେପର ଟାପର କରୁଯାଉଚୁ ? ସେଇଟା ଚାଲିଗଲା ବୋଲି କି ଝିଅ କଣ ଅଉ ମିଳିବେ ନାଇଁ ?

ଜ୍ୟୋତି—ବୋଉ ! ମୋ ଆଗରେ ସେ ସେଣ୍ଟ ପାଣ୍ଟ କଥାଗୁଡ଼ାକ କହନା । ଇଏ ମୁଁ ଠିକ୍ ଚିହ୍ନିଚି । ଭଗ୍ୟ ତୁ ମୋର ମା— ନହେଲେ—( ରାଗରେ କଣ କହିବାକୁ ଯାଇ କହିପାରିଲା ନାହିଁ )

ପିଅର—ମଲ, ସାବତ ମା ବୋଲି ସମସ୍ତେ ଜାଣନ୍ତି ସେ । ମନ ହେଉଚି ସେବେ ଧକ୍କା ମାରୁନାହିଁ ? ( କାନ୍ଦ କାନ୍ଦ ) କାହାର ସିନା ପୁଅ ବୋହୂଙ୍କ ସକାଶେ ଦିନ ଭଲରେ କଟେ, ମୁଁ ଏବେ ମ୍ଳାନକପାଳୀ ଯେ, ସମସ୍ତେ ମୋର ଉପରେ ଦାଉ ସାଧୁଚନ୍ତି ।

ଘନ—ବାପ ଜତି ! ତୋ ବୋଉର ଏସବୁ ଢଙ୍ଗ ଦେଖିଶୁଣି ମୁଁ ଭାରି କଷ୍ଟରେ ଚଳୁଚି । ସବୁବେଳେ ଗାଳି ଭାବନା, ତୁ ମଲେ ଏ ବୁଢ଼ାଦିନେ ଏକା ଘୁଣ୍ଡ ଲୁଅଡ଼େ ଯା'ନା ରେ । ତୁ ଗଲେ ମୁଁ ମରିଯିବି । ଧର୍ମ୍ମ ସାକ୍ଷୀ ରଖି କହୁଚି ରେ ଜତିଅ, ମୁଁ ମରିଯିବି ନଇଲେ ପାଗଳ ହେଇଯିବି, ଅବୁଝା ହୋ'ନା ବାପ, ଅ, ଘରକୁ ଅ—

ଜ୍ୟୋତି—କାହିଁକି ବାପା ! ତମରତ କିଛି ଅଭାବ ନାହିଁ, ଗଦା ଗଦା ଟଙ୍କା ଯାହାର ସିନ୍ଦୁକରେ ଭରି ରହିଚି, ତା'ର ପୁଣି ଭାବନା କଣ ? ମନକଲେ ଜତିଅପରି ପାଞ୍ଚ ପାଞ୍ଚଟା ପୁଅ ତାକୁ ମିଳିବେ । ଅଚ୍ଛା କୁହତ, 'ବୋହୂ ବୋହୂ' ବୋଲି ଯାହାକୁ ଏତେ ସ୍ନେହ କରୁଥିଲ, ଯେ ଜୀବନକୁ ତୁଚ୍ଛକରି, ଗାଳିମାଡ଼ ସହି, ତୁମରି ସେବାରେ ଲାଗିଥିଲା । ତୁମେ ତାକୁ ବୋଉ କଥାରେ ପଡ଼ି ମିଛ ଅପବାଦ ଦେଇ ବାହାର କରିଦେଲ ; ଧର୍ମ ଆଡ଼କୁ ଟିକେ ନଜର ରଖିଲ ନାହିଁ ? ହତଭାଗୀ ହାତରୁ ଶଙ୍ଖା ଖୋଲି ଲୁଅଡ଼େ ଗଲା, କଣ କଲା, ଟିକିଏ ଖବର ନେଇ

ବୁଝିଲ ନାହିଁ ? ଏଇଥିପାଇଁ ଗରବ ସଂସାରରୁ ଝିଅଟିଏ ବୋହୂକରି ଆଣିଥିଲ ?

ଘନ—ମତେ ଆଉ କିଛି କହନା ରେ ଜଗୁଆ, ସବୁ ମୋର ଭୁଲ୍ ହୋଇଛି । ହଁ, ମୁଁ ବୋହୂକୁ ଘରୁ ତଡ଼ି ଦେଇଛି, ଆଉ କାହାର କିଛି ଦୋଷ ନାହିଁ । ହେଲେ ଜଗୁଆ, ମୁଁ ତୋର ବାପା, ତତେ ଜନ୍ମ ଦେଇଛି । ମୋ ମୁହଁ ଅଡ଼କୁ ଟିକେ ଅନେଇବୁ ନାହିଁ ?

ଜ୍ୟୋତି—(ଛଳଛଳ ଆଖିରେ) ତୁମେ ବୁଝିବ ନାହିଁ ବାପା, ବାପ ହୋଇ ପୁଅ ମନରେ ତୁମେ ଆଜି କେତେ ବଡ଼ ଆଘାତ ଦେଇଛ । ମୋ ପାଇଁ ମୋର ଦୁଃଖ ନଥିଲା, ବସ୍ତୁର ବାଧା, ଛନ୍ଦ କପଟ ତା'ଠି ଟିକିଏ ହେଲେ ନଥିଲା, ତାର ଏଇନେ କି ଅବସ୍ଥା !

ପିଅର—ମଲା ! କହୁଲି ପରା, ନାଥିଆ ଟୋକା ତା ସାଙ୍ଗେ ସାଙ୍ଗେ ଯାଇଛି । ତୁ ପିନା ତା ସକାଶେ ଝୁରୁଚୁ, ସେ ଏଇନେ ନାଥିଆକୁ ନେଇ ତା'ମିତ ସେ ଘର କରିବଣି । ବଞ୍ଚିଥିଲେ ଏଇ ଆଖି ଫେର କେତେ ଦେଖିବ ଯେ—

ଜ୍ୟୋତି—ବୋଉ ! (ଦୌଡ଼ିଗଲା ସ୍ୱଗରେ) ନା, ନା—

ପିଅର—ଏ କଣ ମାରିବୁ ନା କଣ ?

ଘନ—ଜଗୁବୋଉ, ତୁମକୁ ମୋ ନିୟମ ଦେଇ ନେହୁରା ହୋଇ କହୁଛି, ତୁମେ ଘର ଭିତରକୁ ଯାଅ । ତୁମେ ମୋର ସ୍ତ୍ରୀ, ତଥାପି ଏ ବୁଢ଼ା ବୟସରେ ମୁଁ ତୁମର ଗୋଡ଼ ଧରୁଛି, ତୁମେ—

ଜ୍ୟୋତି—ଛି, ବାପା, ତୁମେ ଏତେ ବଦଳି ଗଲଣି ? ଏଇ ସକାଶେ ବୋଉ ମଲା ପରେ ପରେ ତୁମେ ଫେର ସଂସାର କରିବାକୁ ମନ କରିଥିଲ ?

ଘନ—ଉପାୟ ନାହିଁ ପୁଅ—ଉପାୟ ନାହିଁ । ମୁଁ ମହାଭୁଲ କରିଛି, କରିସାରିଛି—ଆଉ ଫେରିବାର ଉପାୟ ନାହିଁ । ଖାଲି ଆଖି ପାଣି ମୋର ସାର । ନା, ନା, ତୁ ଯା'ବାପ, ତୋ ବାଟରେ ତୁ ଚାଲିଯା'; ଯଦି ଅଭାଗୀ କୋଉଠି ବଂଚିଥାଏ, ଯଦି ସେ କେବେ ଆପଣାର ବୋଝ୍ ଉଣ୍ଡି ପାଖକୁ ଦୌଡ଼ିଆସେ, ତାକୁ ଠେଲି ଦବୁନି, ବାପ ! ପୁଣି ଥରେ ଶାଢ଼ୀ ଖଞ୍ଜାରେ ଦେବୀଙ୍କୁ ସଜେଇ ଘରକୁ ଆଣିବୁ । ନହେଲେ ବା ଏ ଘର, ସମାଜ ଯଦି ତାକୁ ଘଉଡ଼େଇ ଦିଏ—ତୁ ତାକୁ ନେଇ ଆଉ କୋଉଠିକି—

ଜ୍ୟୋତି—ସେଇ ଆଶୀର୍ବାଦ କର, ବାପା ! ମୋ ଚଲାବାଟରେ ମୁଁ ଯେମିତି ଅଶ୍ରୁସ୍ନାତା ରାଧାର ଦେଖାପାଏ । ବୋଉ ! ଦିନେ ତୁ ରାଧାକୁ ଅଭିଶାପ ଦେଇଥିଲୁ, ଏ ବଂଶରେ ବତୀ ଜାଳିବାକୁ କେହି ରହିବେ ନାହିଁ । ତୋର ରାକ୍ଷସୀ ଅଭିଶାପ ଆଜି ଫଳିବାକୁ ଯାଉଛି—ଆନନ୍ଦ କର, ବୋଉ ! ଆନନ୍ଦ କର । ଆଶୀର୍ବାଦ କର, ପୁଅ ବୋହୂ ତୋର ବାଟରେ ଘାଟରେ ପଡ଼ି ମରନ୍ତୁ । (ପ୍ରସ୍ଥାନ)

ଘନ—ଜଉବୋଉ ! ଜଉଥ ଚାଲିଗଲା—ପୁଅ ମୋର ଚାଲିଗଲା—ତୁମରି ପାପରେ ମୋ ବଂଶର ଶେଷ ଦୀପଶିଖାଟି ଆଜି ଲିଭି-ଯାଉଛି, ତୁମେ ଆନନ୍ଦ କର—ନାଚ—ନାଚ ଭୈରବୀ, ନାଚ—ମୁଁ ବି ତୁମ ସାଙ୍ଗରେ ନାଚିବି—ଖୁବ୍ ଆନନ୍ଦରେ ନାଚିବି—(ପଡ଼ିଯାଉଥିଲେ, ପିଅରମଣି ଧରି ପକାଇଲେ) ।

---

# ପଞ୍ଚମ ଦୃଶ୍ୟ

[ ଜହରର ପ୍ରେସ ସଂଲଗ୍ନ Hall Room । ସିନ୍ ଉଠିଲା ପରେ ପରେ ଦେଖାଗଲା ଘରର ଗୋଟାଏ କୋଣରେ ଥିବା ଗାନ୍ଧିଜୀଙ୍କର ବିରାଟ ମୂର୍ତ୍ତୀ ନିକଟରେ ଛିଡ଼ାହୋଇ ଜହର ମୁଣ୍ଡ ନୁଆଁଇ ମନକୁ ମନ କହୁଥିଲେ ]

ଜହର—ମନର ବଳ ମୁଁ ହରେଇ ନାହିଁ, ଦେବତା ! ଶତ ଯୁଗର ଅଭିଶାପ ମୁଣ୍ଡରେ ବହି ମଧ୍ୟ ମୁଁ ଅଟେଇ ପାରିବି । ତୁମର ଆଦର୍ଶ ନେଇ ମୁଁ ଯୁଦ୍ଧ ମଡ଼ାଏ, ସେଇ ହେବ ମୋର ଦେବତାର ଆଶୀର୍ବାଦ । ଅନେକ ଦୂରରେ ଥାଇ ମଧ୍ୟ ତୁମେ ଯୋଉ ନିର୍ଦ୍ଦେଶ ଦେଇଚ, ମୋର ମନେହୁଏ ତୁମେ ଯେମିତି ସବୁବେଳେ ମୋର ପାଖେ ପାଖେ ଅଛ । ଅତୀତ ଇତିହାସର ପୃଷ୍ଠା ଓଲଟି ବର୍ତ୍ତମାନର ପଥ ଉଦ୍‌ଘାଟନ କର, ମହାପୁରୁଷ ! ଭାରତବାସୀଙ୍କର ଭବିଷ୍ୟତ ପଥ ତୁମେହିଁ ଉଦ୍‌ଘାଟନ କର (ହେମନ୍ତ ଛିଡ଼ା ହୋଇଥିଲେ ନତମସ୍ତକରେ ପ୍ରବେଶ କରି) ଏ ମୃତଜାତିର କାନରେ ସ୍ୱାଧୀନତାର ମନ୍ତ୍ର ଢାଳି ତୁମେଇ ତାଙ୍କୁ ସଞ୍ଜିବୀତ କର (ଜହର ନମସ୍କାର କରି ଫେରିଲେ) । କିଏ, ହେମନ୍ତ ? ପ୍ରେସ୍‌ର ଯନ୍ତ୍ରଗୁଡ଼ାକ ତା'ହେଲେ ଏକାବେଳକେ ଅକର୍ମଣ୍ୟ ହୋଇପଡ଼ିଲେ, ନା !?

ହେମନ୍ତ—ଚିନ୍ତା ନାହିଁ ଅଙ୍କଲ ! ପୁଣି ସେମାନେ active ହୋଇ-ଉଠିବେ । ଶୁଭକ୍ଷଣରେ ଧୂମକେତୁର ଜନ୍ମ । ସେ କେବେ-ହେଲେ ମରିବ ନାହିଁ । ଗୋଟାଏ ରିଭଲ୍ୟୁସନ୍ ଗୃହିତ । ଆପେ ଆପେ ବନ୍ଦ ହୋଇଯିବ । ଝଡ଼ ମରେ ପରେ ଶାନ୍ତି ଓ ଶୃଙ୍ଖଳା ନିଶ୍ଚୟ ଆସିବ ।

ଜହର—ଖୁସି ହେଲି । ସେ ବିଶ୍ୱାସ ତୁମେ ହରେଇ ନାହିଁ ? କିନ୍ତୁ ହେମନ୍ତ ! ହଜାର ହଜାର ବାଦ୍ ନେଇ ପୃଥିବୀରେ ଯୋଉ ବିପ୍ଳବ ଆରମ୍ଭ ହେଇଚି ତାର ଶେଷ ମୀମାଂସା କଣ ହେଇ-ପାରିବ ?

ହେମନ୍ତ—ନିଶ୍ଚୟ ହବ, ଅଶ୍ଚ । ଦିନ ଆସିବ, ଯେତେବେଳେ ସମସ୍ତେ ପୁଣି ଠିକ୍ ଲକ୍ଷ୍ୟସ୍ଥଳରେ ଆସି ପହଞ୍ଚିବେ । ସେ ଦିନ ବି ପାଖେଇ ଆସୁଚି ।

ଜହର—ସେ କଥା ଥାଉ ! 'ସମାଧାନ' ନାଟକର କଣ ହେଲା କୁହ ତ ?

ହେମନ୍ତ—ନୂଆଖାଲି ଓ ତ୍ରିପୁରାର ବିପନ୍ନଅଞ୍ଚଳମାନଙ୍କୁ ସାହାଯ୍ୟ କରିବା ଲାଗି ଏ ନାଟକ ଅଭିନୀତ ହବ । ମୁଁ ଆଶା କରୁଚି, ସହରର ହିନ୍ଦୁ ଓ ମୁସଲମାନ ଭାଇମାନେ ଆମ୍ଭମାନଙ୍କୁ ସାହାଯ୍ୟ କରିବେ । କାରଣ କୌଣସି ଜାତି ବା କୌଣସି ସମ୍ପ୍ରଦାୟ ଗୁଣ୍ଡା ଶ୍ରେଣୀର ପକ୍ଷପାତୀ ନୁହନ୍ତି ।

ଜହର—ବେଶ୍ ସେଇଆ ହଉ । ସାହାଯ୍ୟ ସେମାନଙ୍କର ଏକାନ୍ତ ଦରକାର । ଦିନ ପୁଣି କେବେକୁ ସ୍ଥିର କରୁଚ ?

ହେମନ୍ତ—ଦିନ ସ୍ଥିର କରି ମୁଁ ଆପଣଙ୍କୁ ଜଣେଇବି । ପ୍ରଥମେ ଦେବକୁମାର ସାଙ୍ଗରେ ପରାମର୍ଶ କରିବା ଦରକାର ।

ବାବୁଆ—(ପ୍ରବେଶକରି) ମେନେଜର ବାବୁ ! ଆପଣ ଅଫିସ୍ ଘରକୁ ଆସନ୍ତୁ । ଟଙ୍କା ସବାଶେ ବେଶ୍ରୁ, ମଧୁ ପଣ୍ଡିତ ଗୁହିଁ ବସିଛନ୍ତି ।

ହେମନ୍ତ—ଅଚ୍ଛା ! ଯାଉ ଚୁଲିଚ । (ବାବୁଆସହ ପ୍ରସ୍ଥାନ)

ଜହର—( କୁଡ଼ାହେଇ ଶୂନ୍ୟଦୃଷ୍ଟିରେ ଚାହିଁ ବହିଥିଲେ ସତେ କି ପୃଥିବୀର ଭବିଷ୍ୟତ ଅଡ଼କୁ । ପ୍ରବେଶ କଲା ଛାୟା; ଜହରକୁ ଦେଖିବାକ୍ଷଣି କାନ୍ଦ କାନ୍ଦ ଏକାବେଳକେ ଲେଟି ପଡ଼ିଲା ) ଏ କଣ, ଛାୟା ? ତୁମେ କାନ୍ଦୁଚ ଯେ—କଣ ହେଇଚି ତୁମର ?

ଛାୟା—ଜହରବାବୁ ! ଆଜି ମୁଁ ଆପଣଙ୍କୁ ଛାଡ଼ିଦେବି ନାହିଁ ।

ଜହର—ତୁମେ ବୋଧହୁଏ ଜାଣିନାହିଁ ଛାୟା, ଜହର ନିଷ୍ଠୁର, କଠୋର କଥା କହେ । ଛାତି ତାର ପଥର । ହେଲେ ସ୍ତ୍ରୀଲୋକର ଆଖିର ଲୁହ ତାର ସହ୍ୟ ହୁଏନା । ଉଠ, କଣ ହେଉଛ ଲୁହ ।

ଛାୟା—(ଲୁହ ପୋଛୁ ସ୍ଥିରସ୍ୱରରେ) ମୁଁ ଜାଣେ ଆପଣ ପଥର, ଆପଣ ପାଷାଣ । ତାହାର ଆଖି ଲୁହ ଆପଣଙ୍କୁ ଟଳାଇ ପାରିବ ନାହିଁ । କିନ୍ତୁ ତା ଜାଣି ସୁଦ୍ଧା ମୁଁ ଆଜି ଆସିଛି—

ଜହର—(ତୀକ୍ଷ୍ଣଦୃଷ୍ଟିରେ) ଛାୟା—

ଛାୟା—ନ ଆସି ମୋର ଅନ୍ୟ ଉପାୟ ନ ଥିଲା । ସେଇଥିପାଇଁ ବାରମ୍ବାର ଆଘାତ ପାଇ ମଧ୍ୟ ଆସିବାକୁ ବାଧ୍ୟ ହେଉଛି । କୁହନ୍ତୁ ଜହରବାବୁ ! ଆପଣ କଣ ଆପଣଙ୍କ ପ୍ରତିଶ୍ରୁତି ରକ୍ଷା କରିବେ ? ମତେ ଯେଉଁ କଥା ଦେଇଥିଲେ—

ଜହର—ମୁଁ ତୁମକୁ କଥା ଦେଇଥିଲି ? କଣ କହୁଛ ଛାୟା, କୋଉ ଅଶୁଭ ମୁହୂର୍ତ୍ତରେ ମୁଁ ତୁମକୁ କଥା ଦେଇଥିଲି !

ଛାୟା—ଅଶୁଭ ନୁହେଁ ଜହରବାବୁ ! ଭାରି ଶୁଭକ୍ଷଣରେ ଆପଣ ମତେ କଥା ଦେଇଥିଲେ, ଯୋଉଦିନ ମୋ ଜୀବନରେ ଝଡ଼ ଉଠିବ, ଆପଣଙ୍କ ପାଖକୁ ଆସିଲେ ଆପଣ ମତେ ଆଲୋକର ସନ୍ଧାନ ଦେବେ । ସେଇ ଦାବୀ ନେଇ, ସେଇ ଭରସା ନେଇ ମୁଁ ଆଜି ଆସିଛି । ମତେ ଆପଣ ଉପାୟ କହିଦିଅନ୍ତୁ । କଣ କଲେ ମତେ ଅନ୍ତତଃ ଆତ୍ମହତ୍ୟା କରିବାକୁ ପଡ଼ିବ ନାହିଁ ।

ଜହର—ଅସ୍ଥିର ହୁଅନାହିଁ, ଛାୟା । ମୁଁ କଥା ଦେଇଥିଲି, ସେ କଥା ମୁଁ ରଖିବି । କିନ୍ତୁ କଣ ହେଲା ତୁମର ? ହଠାତ୍ ଏ ଅଦିନ ଝଡ଼ର କୌଣସି ସୂଚନା ତ ଦେଖା ଦେଇ ନଥିଲା ?

ଛାୟା—ଏସାହେବ ଅମଳ ଚୌଧୁରୀ ସ୍ୱାମୀଙ୍କର ସାହାଯ୍ୟରେ ଅମଣିଙ୍କ ବିରୁଦ୍ଧରେ ମିଥ୍ୟାପ୍ରଚାର କରୁଛନ୍ତି । ଯାହା ଅଛି—

ଜହର—ସେ କଥା ତ ଅଳ୍ପଦିନ ଆଗରୁ ତୁମର ମୁହଁରୁ ଶୁଣିଥିଲି ତା'ପର—ଏ ପ୍ରଚାରବୃତ୍ତିର ଅର୍ଥ କଣ ?

ଛାୟା—ତା ପରେ ସେ ଶଯ୍ୟତାନ୍—

ଜହର—ଅମଳ ଚୌଧୁରୀ ? କଣ ହେଉଛି କୁହ !

ଛାୟା—ମତେ ଜୋରକରି ବିବାହ କରିବାକୁ ଚାହେଁ । ଟଙ୍କାର ଲୋଭ ଦେଖାଇ ସେ ସ୍ୱାମୀଙ୍କର ମୁଣ୍ଡ ଖରାପ କରି ଦେଇଛି ତୁ ଏତ ତାର କଥାରେ ପଡ଼ି—

ଜହର—ବୁଝିଲି ; ତୁମେ ବିପଦରେ ପଡ଼ିଛ । କିନ୍ତୁ ଛାୟା, ଏ ବିବାହରେ ତୁମର ଆପତ୍ତି ହେବାର କାରଣ କଣ ? କୋଟିପତିର ସ୍ତ୍ରୀ ହେବା ତ କମ୍ ସୌଭାଗ୍ୟର ବିଷୟ ନୁହେଁ !

ଛାୟା—ଜହରବାବୁ ! ପୁଣି ଥରେ ମତେ କଣ ମନର କଥା ଜଣେଇବାକୁ ହେବ ?

ଜହର—ଦରକାର ନାହିଁ । ମୁଁ ଜାଣେ, ତୁମେ ମତେ ଭଲ ପାଅ । କିନ୍ତୁ ସେଥିରେ ତୁମେ ଅଶାନ୍ତି ପାଇବ ଛାୟା—ଜହର ବିପ୍ଳବୀ—ଲମ୍ପଟ—ନଷ୍ଟଚରିତ୍ର—ଦେଶ ଦୁନିଆଁରେ ଯାହାର ଅଜସ୍ର ଦୁର୍ନାମ ।

ଛାୟା—ଭୁଲେଇବାର ଚେଷ୍ଟା କରନ୍ତୁ ନାହିଁ । ଆପଣ କଥା ଦେଇଥିଲେ ମତେ ମୁକ୍ତିର ବାଟ ଦେଖେଇ ଦେବେ । ମୁଁ ଆଜି ଆସିଛି ତାର ଉପାୟ ଜାଣିବାକୁ ।

ଜହର—କିନ୍ତୁ—

ଛାୟା—କିନ୍ତୁ ଆପଣ ଯେବେ ଅସ୍ୱୀକାର କରିବାକୁ ଚାହାନ୍ତି, ସେଇ-
କଥା ମନେ କରୁ ଦିଅନ୍ତୁ । ମୋର ଦୁଃଖ କରିବ ନାହିଁ ।
ମୋର ଚାଲିବା ବାଟ ମୁଁ ଠିକ୍ କରି ନେବି ।

ଜହର—ହୁଁ...

ଛାୟା—ତୁନି ହୋଇ ରହିଲେ ଚଳିବ ନାହିଁ । ଉତ୍ତର ଦିଅନ୍ତୁ ।

ଜହର—(ଛାୟାର ହାତଧରି ଆଗେଇ ନେଇ ଗାନ୍ଧିଜୀଙ୍କର ମୂର୍ତ୍ତି ନିକଟକୁ) ଆସ, ମୁଁ ତୁମକୁ ମୁକ୍ତିର ବାଟ ଦେଖେଇ ଦେବି । (ମୂର୍ତ୍ତି ପାଖରେ ମୁଣ୍ଡ ନୁଆଁଇ) ଏଇଠି—ଶତାବ୍ଦୀର ଏ ମହାମାନବଙ୍କର ପାଦଛୁଇଁ ତାଙ୍କର ମୂର୍ତ୍ତି ଆଡ଼କୁ ଚାହିଁ ଆଜି ଶପଥ କର ଛାୟା ! ତୁମେ ଦେଶର ସ୍ୱାଧୀନତା ପଥରେ ଯାତ୍ରୀ ହୋଇ ଚାଲିବ ସେଇମାନଙ୍କ ସାଙ୍ଗରେ, ଯୋଉମାନେ ତାଙ୍କର ସବୁ କିଛି ଦେଶମାଟିର ସ୍ୱାର୍ଥରେ ବଳିଦେଇ ଆଜି ହେଇଚନ୍ତି ଫକିର । ଏଇ ଶପଥ ତୁମେ କର ଛାୟା—ତୁମେ ମୁକ୍ତିର ଆଲୋକ ଦେଖିବାକୁ ପାଇବ ! ଲକ୍ଷ ଲକ୍ଷ ଭାଇ ଭଉଣୀଙ୍କ ସ୍ୱାର୍ଥରେ ନିଜକୁ ଆହୁତି ଦେବାକୁ ପ୍ରସ୍ତୁତ ହୁଅ ଛାୟା, ମୁଁ ତୁମକୁ ମୋ ସାଙ୍ଗରେ ସେ ଯଜ୍ଞସ୍ଥଳୀକୁ ନେଇଯିବି ; ଯୋଉଠି ଲକ୍ଷ ଲକ୍ଷ କୋଟି କୋଟି ବାପ ମା, ଭାଇ ଭଉଣୀ ଏକସ୍ୱରରେ ଆର୍ତ୍ତନାଦ କରୁଚନ୍ତି "ରକ୍ଷାଂ ଦେହି ।" ତାଙ୍କର ଦୁଃଖରେ ଭାଗୀ ହୋଇ ଜାତିଧର୍ମର ଭେଦ ଭୁଲି ସେଇ ଯଜ୍ଞ ବେଦୀ ଉପରେ ସହର୍ଷରେ ଠିଆ ହୋଇ ହିନ୍ଦୁ ମୁସଲମାନ ମିଳନର ମହାମନ୍ତ୍ର ଗାଇ ପାରିବ "ବନ୍ଦେ ମାତରଂ, ବନ୍ଦେ ମାତରଂ—" ?

ସ୍ୱପ୍ନା—ବନ୍ଦେ ମାତରଂ—ବନ୍ଦେ ମାତରଂ—

( ହଠାତ୍ ଖଦ୍ଦରଭରା ହସ୍ତେ ସୁଧାଂଶୁର ପ୍ରବେଶ )

ସୁଧାଂଶୁ—ଜହର ! ଜ-ହ-ର !···

ଜହର—କିଏ ? ଓ, ଆପଣ ! ମତେ ଗୁଳି କରିବାକୁ ଆସିଚନ୍ତି ? କରନ୍ତୁ—ଗୁଳି କରନ୍ତୁ—( ଛାତି ପାତିଦେବା )

ସୁଧାଂଶୁ—(ଆଗେଇଯାଇ ମହାତ୍ମାଙ୍କ ଚରଣ ତଳେ ପିସ୍ତଲ ରଖି) ଜହର, ମତେ କ୍ଷମାକର ଭାଇ ! ଏତେଦିନ ଯୋଉ ଭୁଲ ମୁଁ କରିଆସିଚି, ଆଜ ତାର ଯବନିକା । ଟୋଟା ଭରା ପିସ୍ତଲରେ ତୁମେଇ ବରଂ ମତେ ନିଃଶେଷ କର । ସେଇଥିରେ ମୋର ପାପ-ଆତ୍ମା ଶାନ୍ତି ପାଇବ । (ନତମୁଖରେ ଛିଡ଼ାହେଲେ)

ଜହର—ସୁଧାଂଶୁବାବୁ ! ଆପଣ ମହତ । ମୁଁ ଆପଣଙ୍କର ଏ ପରିବର୍ତ୍ତନର କଳ୍ପନା କରୁଥିଲି । କେବଳ ସେତିକି ନୁହେଁ, ଦିନ ଆସିବ ଆପଣଙ୍କ ଭଳି ପ୍ରତ୍ୟେକେ ନିଜ ନିଜର ଭୁଲ୍ ବୁଝି ହାତକୁ ହାତ ମିଳେଇ ସ୍ୱାଧୀନତା ପଥରେ ଆଗେଇ ଚାଲିବେ । ସେଇଦିନ ଆମର ଜନ୍ମଭୂମି ସ୍ୱାଧୀନ ହବ, ସେଇଦିନ ମା'ର ହାତର ଶିକୁଳି ଧୀରେ ଧୀରେ ଛିଡ଼ି ପଡ଼ିବ ।

---



୪

## ପ୍ରଥମ ଦୃଶ୍ୟ

ଜହରର 'ସମାଧାନ' ନାଟକର ଅଭିନୟ ଦୃଶ୍ୟ ।

[ ୧୯୦୬ ସାଲର ଗୁରୁତ୍ୱପୂର୍ଣ୍ଣ ପରସ୍ଥିତି, ଭାରତର ବଙ୍ଗ ପ୍ରଦେଶରେ ହିନ୍ଦୁ ମୁସଲମାନଙ୍କର ଅନ୍ତର୍ଜାତିକ ଯୁଦ୍ଧ—ହତ୍ୟା, ବିଭୀଷିକା, ଲୁଣ୍ଠନ, ଅପହରଣ, ଗୃହଦାହ, ଧର୍ମନଷ୍ଟ ପ୍ରଭୃତି ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ବିପ୍ଳବ, ବିବାଦ, ବିଶୃଙ୍ଖଳାର କରୁଣ ଦୃଶ୍ୟ ଛାୟା ସାହାଯ୍ୟରେ ଦେଖାଗଲା ]

[ ଅତ୍ୟନ୍ତ କ୍ଷୀଣ ଜୋଡ଼ ଦୃଶ୍ୟରେ ଦେଖାଦେଲେ ଭାରତ-ମାତା (ରାଧା)—ଜୀର୍ଣ୍ଣବସ୍ତ୍ର ପରିହିତା, ଅଲୁଳାୟିତ କେଶା, ବିପର୍ଣ୍ଣ-ବଦନା, ଦୀନା ଭିକାରୁଣୀ ବେଶରେ, ହାତରେ ଶୃଙ୍ଖଳା—ଉଭୟ ପାର୍ଶ୍ୱରେ ନତଜାନୁ ହୋଇ ଜହର ଓ ଛାୟା, ପ୍ରେସ୍‌ର କର୍ମଚାରୀ-ମାନେ ବିଭିନ୍ନ ଅଭିନେତା ରୂପେ ଦେଖାଦେଲେ । ଗୋଳମାଳ ଚାଲିଥାଏ । ]

**ଜହର**—ମା ! ମା !

ରୁଧା—ବନ୍ଦ କର, ବନ୍ଦ କର । ଏ ରକ୍ତପାତ ମୁଁ ଦେଖି ପାରିବି ନାହିଁ । ଭାଇ ଭାଇ ଭିତରେ ଏମିତି କଳି କଳହ କରି ତୁମେ ଆଜି ମୋର ଏଇ ଅବସ୍ଥା କରିଚ । ତେବେ ସୁଦ୍ଧା ତୁମର ଚେତା ଆସୁନାହିଁ, ନିଦ ଭାଙ୍ଗୁନାହିଁ ? ମାଆକୁ ବେଡ଼ି ପିନ୍ଧାଇଲ, ବିଦେଶୀର ଦାସୀ କରେଇଲ, ଆଉ କଣ ମନରେ ଅଛି କୁହ ତ ?

ଜହର—ସବୁଦିନେ ମା ତୁମର ଦାସୀ ହୋଇ ନ ଥିଲା । ତୁମେ ତାକୁ ବେଡ଼ି ପିନ୍ଧେଇଚ, ମାଆ ତୁମର ରାଜରାଣୀ, ଚାଳିଶ କୋଟି ପୁଅ ଝିଅଙ୍କୁ ଜନ୍ମ ଦେଇଛି ସେ, ଖୋଇ ପେଇ ମଣିଷ କରିଚି ସେ, ହିନ୍ଦୁ, ମୁସଲମାନ୍ ସମସ୍ତେ ତାର ରକ୍ତରେ ଗଢ଼ା, ଅଥଚ ନିଜ ନିଜର ଜାତିଗତ ଓ ଧର୍ମଗତ ସ୍ୱାର୍ଥ ନେଇ ଗରିବ ମାଆର ସ୍ୱାର୍ଥ ବିଷୟ ଭିତରେ ବୁଡ଼ିଯାଇଚି । ପୃଥିବୀର ସମସ୍ତ ଶ୍ରେଷ୍ଠ ବିଭବର ଅଧିକାରିଣୀ ହୋଇ ମଧ୍ୟ ମାଆ ଆଜି ତୁମର ଭିକାରୁଣୀ । ତାର ବିଶାଳ ସମ୍ପତ୍ତିର ମାଲିକ ଅନ୍ୟମାନେ । ସାତ ସମୁଦ୍ର ତେର ନଈ ପାରିହୋଇ ସେ ଆସିଥିଲା ତୁମ ସାଙ୍ଗରେ ବୋଇତ ନେଇ ବେପାର କରିବାକୁ—ଜନ୍ମଭୂମିର ସ୍ୱାର୍ଥ ସ୍ୱାଧୀନତା ଟିକଡ ଝେଙ୍କି-ଦେଲ ତାର ହାତରେ ! ଅକାରଣରେ ଭାଇ ଭାଇ ଭିତରେ ବାଦକରି ରକ୍ତନଦୀ ବୁହାଇବାକୁ ଲଜ୍ଜା ହୁଏନା ! ଚିରଦିନ ଗୋଲାମ ହୋଇ ଦୁର୍ଭିକ୍ଷପ୍ରପୀଡ଼ିତ ଜରାଜୀର୍ଣ୍ଣ ଚୁର୍ଣ୍ଣ ଶରୀର ନେଇ ଭିକାରୀର ଝୁଲିଧରି ଅହଙ୍କାର କରିବାକୁ ଲଜ୍ଜା ହୁଏନା ?

ରୁଧା—ଏକା ରକ୍ତରେ ଗଢ଼ା ଭାଇ ଭାଇ ଭିତରେ ଧର୍ମ ଓ ଜାତିଗତ ସ୍ୱାର୍ଥନେଇ ଗରିବ ମାଆର ସ୍ୱାର୍ଥ ବିଷୟ ଭିତରେ ବୁଡ଼ି-

ଯାଉଛ । ଗୃହଲକ୍ଷ୍ମୀ ଚୋଷ୍ଟୀ ପିଲ୍ଙ୍କୁ ଜନ୍ମ ଦେଉଛ ମୁଁ, ଖୋଉ ପେଉ ମଣିଷ କରଚି ମୁଁ, ଅଥଚ ସମସ୍ତେ ଭୁଲି ଯାଉଚନ୍ତି ମୋର କଥା । ହିନ୍ଦୁ ମୁସଲମାନ ବୀର ପୁଅମାନେ ଥାଉ ମଧ୍ୟ ମୁଁ ଅଛ ଅନାଥା, କ୍ରୀତଦାସୀ ! ଯାହାର ପୁଅଟିଏ ଦୁର୍ବଳ ଷଣ୍ଢ, କଣ ନେଇ ସେ ଦୁନିଆ ଆଗରେ ମୁଣ୍ଡଟେକ ଛିଡ଼ା ହବ ?

ହେମନ୍ତ—ଭାଇ ଓ ଭଉଣୀମାନେ ! ବର୍ତ୍ତମାନ ଗଣ୍ଡଗୋଳର ସମୟ ନୁହେଁ । ଜନ୍ମଭୂମିର ସ୍ୱାର୍ଥରେ ଆମକୁ ଜାଗି ଉଠିବାକୁ ହବ । ଆମକୁ ଆତ୍ମବଳୀ ହବାକୁ ହବ । ବର୍ତ୍ତମାନ ଚେଉଁ ଶୋଇଲେ ଚଳିବ ନାହିଁ । ଭାରତର ଭାଗ୍ୟ ଗଗନରେ ଉଇଁ ଆସୁଚି ସ୍ୱାଧୀନତାର ସୂର୍ଯ୍ୟ । ଆମକୁ ଅଶୋକ, ଖାରବେଳଙ୍କର ସାମ୍ରାଜ୍ୟ ଗଢ଼ିବାକୁ ହବ । ଜଗତ ଜାଣୁ, ଆମର ଶକ୍ତି ସୁପ୍ତ, ଲୁପ୍ତ ହୋଇନାହିଁ ।

ଗଙ୍ଗୁ—ଏହି ମାହେନ୍ଦ୍ର କ୍ଷଣରେ ଜାତି, ଧର୍ମ୍ମ ଭୁଲି ହାତକୁ ହାତ ମିଳେଇ ଭାରତମାତାର ଚରଣ ତଳେ ଶପଥ କର, ଦେଶ ମାଆର ହାତର ଶାଙ୍କୁଳି ଛିଡ଼ି ପଡ଼ିବ, ବଡ଼ ଠାକୁର ଜଗନ୍ନାଥ 'ଯୋଉ ଦେଶର ଅଧିଷ୍ଠାତ୍ରୀଦେବତା, ଯୋଉ ଜାତିର ସମ୍ପଦ, ସେ ଜାତି କେବେ ଗୋଲାମ ଖାଲି ବଞ୍ଚି ପାରେନା । ବଞ୍ଚିଲଭଳି ବଞ୍ଚିବା ତାର ଦରକାର । ସେ ମରିନାହିଁ, ବଞ୍ଚିଚି, ବଞ୍ଚିବ । ପୃଥିବୀର ଶ୍ରେଷ୍ଠଜାତି ରୂପେ ତାର ଆସନ ପ୍ରତିଷ୍ଠିତ ( ଘନ ଘନ ତୂର୍ଯ୍ୟ ନିନାଦରେ ରଙ୍ଗମଞ୍ଚ ପୂରିଉଠିଲା )

ଜହର—ବୋଲ ଭାଇ, ଭାରତମାତାର ଜୟ ! (ସମସ୍ତେ ଭକ୍ତିଭର ଜୟଧ୍ୱନି କଲେ )।

ସୁଧା—ନା, ନା, ବନ୍ଦ କର, ବନ୍ଦ କର, ଅନେକ ଦିନରୁ ଖାଲି ମୁହଁର କଥା ଶୁଣି ଆସିଛି, ଜାତି ଉପରୁ କେବଳ ତୁ ନୋହୁଁ, ଅନେକ ଆଗରୁ ଆସି ନେତା ବୋଲି ଶପଥ ନେଇଛନ୍ତି, କିନ୍ତୁ କାହିଁ ? ବେଶ୍ ତ କୋହଳ ହେଇଗଲ, ବରଂ ବେଶୀ ଟାଣି ଓଟାରି ହେଲେ ଭଙ୍ଗ ହେଇଯାଉଛି ।

ଜହର—ମା !

ସୁଧା—ମୁଁ ନେବି ପରୀକ୍ଷା, ମାଆ ଆଗରେ ପୁଅ ପରୀକ୍ଷା ଦବ । ପାରିବୁ ? କହ, ପାରିବୁ ?

ଜହର—ପାରିବି ମା, ତୋର ଆଶୀର୍ବାଦ ମନ୍ତ୍ରରେ ବଳି ମୁଁ ପରୀକ୍ଷା ଦେବି । ଯେତେ କଠୋର ହଉ ସେ, ତୋର ମୁହଁ ଅଡ଼କୁ ଚାହିଁ ମୋ ଦେହରେ ଶତ ବାଧାବିଘ୍ନ ଭେଦିଯିବ, ଅତ୍ୟାଚାରରେ ଗୋଳା ମୂର୍ତ୍ତିରେ ବି ମୁଣ୍ଡ ମୋର ନଇଁବ ନାହିଁ । ଯଦି ମରଣ ଆସେ ସେଇ ହବ ମୋର ମାଆର ଆଶୀର୍ବାଦ । ଦେବତାର ଦାନପରି ଝରିବ ମୋ ଉପରେ । ମୁଁ ପରୀକ୍ଷା ଦେବି ।

( ଜନତା ଉଠିଲେ, ସୁଧା ଅଣ୍ଟାରୁ ଛୁରୀ କାଢ଼ି ଜହର ହାତକୁ ଦେଲେ )

ସୁଧା—ନେ, ଶପଥ କର, ନିଜର ରକ୍ତ ଦେଇ ଶପଥ କର ।

(ଜହର ନିଜ ହାତ ଆଙ୍ଗୁଠି କାଟି ସେଇ ରକ୍ତରେ ଜନତାକୁ ରକ୍ତ ଟୀକା ପିନ୍ଧାଇଲେ)

ଜହର—ଭାଇ ଓ ଭଉଣୀମାନେ ! ଏଇ ମୁହୂର୍ତ୍ତରୁ ତୁମେମାନେ ମୋ ଶପଥର ଭାଗୀ । ମୁଣ୍ଡରେ ତୁମର ବିଜୟର ରକ୍ତଟୀକା ! ଜାଗ ହିନ୍ଦୁ, ଜାଗ ମୁସଲମାନ ! ଭାରତର ସ୍ୱାଭିମାନୀ

ଦୁର୍ଦ୍ଧର୍ଷ ବୀର ସନ୍ତାନ, ଶାନ୍ତିପୂର୍ଣ୍ଣ ସମାଧାନଲାଗି ଆପଣାକୁ
ପ୍ରସ୍ତୁତ କର । ମାଆର ଶିକୁଳି ଆପେ ଆପେ ଛିଡ଼ିପଡ଼ିବ ।

( ଗୀତ—କୋରସ୍ )

( ଆଜ ) ବିପ୍ଳବୀ ଆମେ ଧ୍ୱଂସିବୁ ସବୁ ବର୍ବରତାର ବନ୍ଧନୀ,
ସର୍ବସ୍ୱ ଦେଇ ଦୁନିଆ ସ୍ୱାର୍ଥେ ପାଉଛୁ ପର ଗୋଲାମୀ ।
ପେଷାଦାୟୀ ଏ ସଭ୍ୟତା ତଳେ ମରୁଛୁ ସବୁ ସିକ୍ତତା,
ଜନ୍ମମାଟିରେ ବଞ୍ଚିବା ଦାବୀ ହେଲା ଅମର ଧୃଷ୍ଟତା ;
ମାନବ ମହାଭାରତର, ମରେ ନାହିଁ ରେ ଲକ୍ଷ ଥର
ମର ଜାଣୁ ଆମେ ସମର-ଦ୍ୱଙ୍କା ମୃତ୍ୟୁରେ ଦେଇ ବରଣୀ । ୧ ।
ଅତି ମହତ୍ତ୍ୱର ଅଭ୍ୟୁତ୍ଥାନରେ ଜଳକିଛି ଏ ଧରଣୀ,
ରକ୍ତ ବଦଳେ ରକ୍ତ ବନ୍ଧାଇ ଧୋଇବୁ ପୁଣ୍ୟ ସରଣୀ ;
ଭୀମ ଭୈରବ ହୁଙ୍କାରେ ଯୋଡି ଗୁଳି ରେ ଉଗ୍ରଚଣ୍ଡ ବାହିନୀ ।୨।
ନିର୍ଦ୍ଦେଶ ଯାର ମସ୍ତକେ ଧର ବାଣ୍ଟ ଲଭିଲା ସାର୍ଥକତା,
ଦୁର୍ବିଷ୍ଟବର ବଜ୍ର କୁଠାରେ ହେଲା ରେ ଆଜ ସେ ନାର୍ଯ୍ୟାଭିତା ;
ଆମେ ଭାଇ ଭାଇ ହିନ୍ଦୁ ମୁସଲମାନ
ମା'ର ସହୁବୁ ନାହିଁ ଅପମାନ,
( ଆଜ ) ଶୃଙ୍ଖଳ ଭରେ ଡାକେରେ ବଳଲେ
ଗୁଳାଣ କୋଟୀର ଜନନୀ । ୩ ।

ଜହର— ( ଗୀତ ପରେ ) କୁହ ଭାଇ, ବନ୍ଦେ ମାତରଂ, ବନ୍ଦେ ମାତରଂ, ବନ୍ଦେ ମାତରଂ !

ସମସ୍ତେ—ବନ୍ଦେ ମାତରଂ—( ହଠାତ୍ Auditoriumରେ ଗଣ୍ଡଗୋଳ ହେଲା । Stage ଉପରକୁ ଉଠିଆସିଲ ଜ୍ୟୋତି ପାଗଳଙ୍କ ପରି ).

ଜ୍ୟୋତି—ବଧା ! ବଧା !

ରାଧା—କିଏ ?
ଜ୍ୟୋତି—ରାଧା, ମୁଁ—( ରାଧାକୁ ଧରି ପକାଇବାକୁ )
ରାଧା—ତୁମେ ? ( ଅନଭ୍ୟସ୍ତ ଅଙ୍ଗରେ ଲୁଚିଗଲା )
ଜ୍ୟୋତି—ହଁ ରାଧା, ମୁଁ ମଦନ, କଲିକତାରେ ହାଣମୁହଁରୁ ବଞ୍ଚି ଯେତେବେଳେ ଘର ପାଖରେ ପହଞ୍ଚିଲି, ତତେ ନ ଦେଖି ମୁଁ ପାଗଳ ହୋଇ ଯାଇଥିଲି । ତୋର ସନ୍ଧାନେ ବାପା ବୋଉଙ୍କୁ ଛାଡ଼ି, ଘରଛାଡ଼ି ଚାଲି ଆସିଛି ।
ଜହର—( ଅତୀବ ଆଶ୍ଚ ) ଆପଣ ରାଧାର ସ୍ୱାମୀ ?
ଛାୟା—ଅଥଚ ସେ ବିଧବା— ?
ଜ୍ୟୋତି—ଗୁଣ୍ଡାମାନଙ୍କ ହାତରୁ ବହୁତ କଷ୍ଟରେ ବଞ୍ଚିଛି, ମୋର ସାଙ୍ଗ ପ୍ରାଣନାଥ କଲିକତାରୁ ଫେରି ମୋର ମଲା ଖବର—
ଜହର—ମୁଁ ସବୁ ବୁଝିଛି, ରାଧା—
ରାଧା—(ଜ୍ୟୋତି ପ୍ରତି) ଜହରବାବୁଙ୍କୁ ପ୍ରଣାମ କର । ତାଙ୍କର ସନ୍ଧାନେ ତୁମେ ମତେ ଫେରି ପାଇଛ, ସେ ମତେ ଶୟତାନ୍ ପ୍ରାଣନାଥ ହାତରୁ ରକ୍ଷା କରିଛନ୍ତି—
ଜହର—ପ୍ରାଣନାଥ ଜେଲରେ—କିଛି ଭୟ ନାହିଁ । ଭିତରକୁ ଆସ, ସବୁକଥା ଶୁଣିବି । (ଜ୍ୟୋତି ପ୍ରଣାମ କଲା)
( ହଠାତ୍ Green Roomରୁ ପ୍ରବେଶ କଲେ ଦେବକୁମାର ଓ ସୁଧାଂଶୁ )
ଦେବ—ଅରେ Mister ଏ କଣ ? ଅଭିନୟଟାକୁ ଏକାବେଳକେ ବାସ୍ତବରେ murder କରିଦେଲେ ଯେ ଜହରବାବୁ ! ରାଧାରାଣୀ ! ମିସ୍ ଛାୟା ! ହେମନ୍ତ ବାବୁ ! What's the matter please ? ଅଭିନୟରେ ଅକାଳ ଯବନିକା

ପଣ୍ଡିଲ୍‌ ନା କଣ ? ହାସ୍ୟ ହାସ୍ୟ ! Thank God very well as He likes.

ଜହର—ଦେବକୁମାର ! ଏଣେ ଅଭିନୟ ବନ୍ଦ ଥାଉ । ତୁମେ ଦର୍ଶକମାନଙ୍କୁ କହେଇଦିଅ, ସେମାନେ କାଲି ଅସି ଦେଖିପାରିବେ । ତାର ବ୍ୟବସ୍ଥା କରାଯିବ । ଆପଣମାନେ ଅସନ୍ତୁ । (ସମସ୍ତେ ଗୁଲିଗଲେ)

ଦେବ—Dear Gentlemen and Ladies ! ଆପଣମାନେ ତ ଜହରବାବୁଙ୍କ ମୁହଁରୁ ସବୁ ଶୁଣିଲେ । ନାଟକର ଅକାଳ ଯବନିକା ଟାଣିବାକୁ ବାଧ୍ୟ ହେଉଛୁ । କ୍ଷମା ଦେବେ । Thank you very well as you like. Jai Hind ! Stage Manager, Drop please ! Drop please !

---